# ସପ୍ତମ ଋତୁ

ରମାକାନ୍ତ ରଥ




ଅଗ୍ରଦୂତ
କଟକ-୨

ସପ୍ତମ ଋତୁ

ଲେଖକ :
ରମାକାନ୍ତ ରଥ

ପ୍ରକାଶକ :
ଅଗ୍ରଦୂତ
ବାଙ୍କାବଜାର, କଟକ-୨

ପ୍ରଥମ ପ୍ରକାଶ : ୧୯୭୭
ଦ୍ୱିତୀୟ ପ୍ରକାଶ : ୧୯୮୭

ପ୍ରଚ୍ଛଦପଟ :
ଅସିତ ମୁଖାର୍ଜୀ

ମୁଦ୍ରଣ :
ସ୍ୱରାଜ ପ୍ରେସ, କଟକ-୧

ମୂଲ୍ୟ :
ଷୋଳ ଟଙ୍କା ମାତ୍ର

**SAPTAMA RUTU**

by :

**Ramakanta Rath**

Publisher :
**Agraduta**
Bankabazar, Cuttack-2

First Publish : 1977
Second Publish : 1987

Printer :
**Swaraj Press**, Cuttack-1

Price : **Rupees Sixteen Only**

# ସୂଚୀ

# ଦ୍ୱିତୀୟ ବତ୍ସର

ମୁଁ ଶୁଣୁଛି କାହା ସ୍ୱର ଠିଆ ହୋଇ ମୋ ହୃଦୟ
ସ୍ୱପ୍ନର ଛାଇରେ ?
ସେ କଣ ତମର ସ୍ୱର ? ମୁଁ ତ ଜମା ବାରି ପାରୁ ନାହିଁ ।
ତମ ସ୍ୱର ଶୁଭିନାହିଁ କେତେମାସ ଧରି । ମୋ ହୃଦୟ
ସ୍ୱପ୍ନର ଛାଇରେ ଠିଆ ଗଛମାନେ ଲଇଁଯାନ୍ତି
ଫୁଲ ଓଜନରେ ।
ସେ ଫୁଲ ଫୁଟନ୍ତି କଣ ତମ ଲଗି ? ମୁଁ ଜାଣି ପାରୁ ନ ।
ତମ ଦେଖା ମିଳ ନାହିଁ କେତେ ମାସ ଧରି । ବର୍ତ୍ତମାନ
ପ୍ରତ୍ୟୂଷ, ମଧ୍ୟାହ୍ନ, ସନ୍ଧ୍ୟା ଓ ରାତି ଭିତରେ
ତମେ ଏକ ନୀଳବର୍ଣ୍ଣ ଅଶ୍ୱବ ଯେଉଁଠି
ସବୁ କାନ୍ଦ, ସବୁ ହସ, ଲଖିଯାଏ ଜଙ୍ଗା ପରି
ନିଷିଦ୍ଧ ପଠାରେ,

ଏବଂ ମୋର ବ୍ଳକଶ କି ପଚ୍ଚଶ ବର୍ଷର
ନିର୍ବାସନ ମଧ୍ୟେ ସ୍ୱପ୍ନ ଏହିପରି ଦେଖି କେତେଥର
ତମର ସ୍ୱରର କମ୍ପା ଆକୃତିର ଭ୍ରମ
କେତେ ଥର ହୋଇ ପୁଣି ଶେଷେ ସ୍ପଷ୍ଟ, ନିର୍ମମ ପ୍ରତ୍ୟୂଷେ
ମ୍ଳାନ ହୋଇଯିବ, ମୋର ପ୍ରାତ୍ୟହିକ ଚିତ୍ତର ଉଦ୍ଭ୍ରାନ୍ତ

ଇତସ୍ତତଃ ବିଚରଣ ଲମ୍ଫି ଯାଏ ଟେଲିଗ୍ରାଫ୍ ତାର ପରି ଝଡ଼େ
ଅବ୍ୟକ୍ତ ସମାପ୍ତିର ଖବର ପ୍ରକାଶେ ।

ମୋର ଏଣୁ ପ୍ରିୟ ମିଛ, ଏପରି କି ଚାନ୍ଦ ଆଉ ହସ
ମିଛ, ତାକୁ ଆଙ୍କିଅଛୁ କାଗଜର ମୁଖାରେ ବିବୃତ
ଶଖଳାର, ମୁଁ ଖୁଣ୍ଟିବିନି ପତ୍ରକୁ କଦାପି ।
ପତ୍ରକୁ ଖୁଣ୍ଟିଲେ ଖାଲି ଦେଖାଯାଏ ଶକଳାଙ୍କ ପ୍ରାଚୀନ କାମନା ।
ପ୍ରତ୍ୟେକ କାମନା ମାଗେ ଅମରତ୍ୱ, ଏକ ଦୀର୍ଘଶ୍ୱାସ,
ବୁଡାଏ ଲୁହ ବା କେଉଁ ସ୍ମୃତି ଫଳକରେ
ଫୁଲଟିଏ, ବା ଅନ୍ତତଃ ସାମାନ୍ୟ ସ୍ମରଣ
ଯାହାପାଇଁ ଲୋଡ଼ା ନାହିଁ ଟିକିଏ ବି ଦୈହିକ ଆୟାସ ।

କିନ୍ତୁ ମୁଁ ଯଦିଓ ଫେରି ଖୁଣ୍ଟିବିନି ପତ୍ରକୁ,
ଯଦିଓ ଆଗକୁ ଖୁଲେ ମୋର ବସ୍ତ୍ର ନ ସରିବାଯାଏଁ
ସିଗାରେଟ୍ ଟାଣି ଏବଂ ବର୍ଷାକୋଟ ଭିତରେ ନିଜକୁ
ବର୍ଷାରୁ ବଞ୍ଚାଇ, ତେବେ ମଧ୍ୟ ସମସ୍ତ ଆସିବ
ମତେ ଟାଣି ନେଆସିବ ବାୟୁଶୂନ୍ୟ ଶଙ୍ଖମଲ୍‌ମଲ୍
ପିଣ୍ଡାରେ ଅଦୃଶ୍ୟ ଏକ ଝର୍ବରକଠାକୁ,
ମୁଁ କିଏ ପଚରି ଯିବ । କ'ଣ ଫଙ୍କି ଦେବି ମୁଁ ନିଜର
ଏତିକି କହିବା ଛଡ଼ା ବେଳେ ବେଳେ ମୋର ଭ୍ରମ ହୁଏ
ତମର ଆକୃତି ଏବଂ ତମର ସ୍ୱରର ?
ବହୁଦିନୁ ମରିଥିବା ମଣିଷଙ୍କ ସହିତ ସମ୍ପର୍କ
ଏତେ ବେଶି, ବେଳେ ବେଳେ ଭ୍ରମ ହୁଏ ନିଜ ଦେହାନ୍ତର ?

ତା'ପରେ ସେ ଝର୍ବରକ ହସି ହସି ଗୁଡ଼ଦେବ ମତେ
ହିଂସ୍ର ଫାଟକଯାଏଁ, ସେ ଫାଟକ ଭିତରେ ଉଦ୍ୟାନ,
ସେଠି ଜମା ହୋଇଥିବ ଝକଳାଙ୍କ ପ୍ରାଚୀନ କାମନା
ମାନଙ୍କର ଉଚ୍ଛ୍ୱସିତ ପ୍ରସ୍ଥ ପ୍ରସ୍ଥ ସରଳ ଯୌବନ ।

# ଛୁଟିର ସ୍ମୃତି

ଏ କ୍ଷିପ୍ର ଧୂସର ମେଘ କାନ୍ଦୁଥିଲା କାଲି
ଘଣ୍ଟରେ ତା ମୁହଁ ରଖି ଘରର ବାଡ଼ରେ
ଆଜି ତେଣୁ ସେଠି ଝୁଲେ ବୁନ୍ଦା ବୁନ୍ଦା ଲୁହ
ସତେକି ସେ ବର୍ଷାପାଣି ଅସରାଏ ପରେ ।

କିନ୍ତୁ ମେଘ କାହିଁକି ବା ବାଛିଲା ମୋ ଘର
ବାଡ଼ରେ ତା ମୁହଁ ରଖି କାନ୍ଦିବାକୁ ? କେବେଁ
ମୋ ପାଇଁ ନୁହେଁ, ମୁଁ ଏକ ଅଜଣା ଅଶୁଣା
ଲୋକ ଯାର ମନେ ନାହିଁ ଆକାଶର ନୀଳବର୍ଣ୍ଣ, ଯାର
ଅବସନ୍ନ ଅଙ୍ଗ ଆଜି ନୁହେଁ ନୃତ୍ୟରତ
ହଳଦିଆ ସକାଳର ମୂର୍ଚ୍ଛନାର ଯେବେ
ଜଳରେ ଡାମ୍ପଣ ଫୋଡ଼ି ନାଚେ ରବିବାର ।

ମେଘ କଣ କାନ୍ଦିଲା କି ତମ ଲାଗି ? ତମେ
କିନ୍ତୁ ଏତେଦିନ ହେଲା ମଲଣି ଯେ ଏ ମେଘ ସାଙ୍ଗରେ
ତମ ଜଣାଶୁଣା ଥିବା ଅସମ୍ଭବ, ତମେ କଣ ଅଛ
ଅମର, ଯେମିତି ଗପ ? କମ୍ବା ଗାଆଁ ପରି
ସବୁଜ ରଙ୍ଗର ଡାଲ ସମସ୍ତ ସାମ୍ନାରେ ?

ମୁଁ ଏପରି ଦିନ କାଟେ, ଆଉ କେତେ ବର୍ଷ
ଏପରି କାଟିବି ଦିନ, ଶୋକପାଇଁ ଶକ୍ତି ନାହିଁ ମୋର,
ଏବଂ ମତେ ଡର ମାଡ଼େ ଡେଇଁପଡ଼ ନଜର ରକ୍ତର
ସମୁଦ୍ରକୁ ପୁନର୍ବାର ଉଠିବାକୁ ହାତେ ଧରି ଚକ୍‌ଚକ୍ ମୁକ୍ତା କାନପାଖେ
ରଖିଲେ ଯାହାକୁ ଶୁଣେ ତମ କଣ୍ଠସ୍ୱର ।
ମୁଁ ଖୋଜେ ମେଘରେ କମ୍ପା ବର୍ଷାରେ, ନକ୍ଷତ୍ରେ
ମନ, ଏକ ପ୍ରଗଲ୍‌ଭ କାମନା
ନିର୍ଦ୍ଦିଷ୍ଟ ମୁହୂର୍ତ୍ତେ ଯାହା ମୋ ସ୍ୱରର ଅନୁକରଣରେ
ତମପାଇଁ କରୁଥିବ ଝୁରିବା ବାହାନା ।

ମୁଁ ଜାଣେ ଫେରିଲାବେଳେ ସୋମବାର ସନ୍ଧ୍ୟାରେ କାମରୁ
ନିଦ ମଳମଳ ଏବଂ ନଗୁଛିଆ ଗଳିରେ ହଠାତ୍
ତମେ ମୋ ଆଗକୁ ଆସି ପଡ଼ିବ, ରବିବାରଟାକୁ
ଏହିପରି ଫାଙ୍କି ଦେବା କଣ ଠିକ୍ ହେଲା ?
ଘୁଣ୍ଡିରେ କେଉଁଠି ଅଳ୍ପ କଷ୍ଟ ହେବ । ମୁଁ ଜାଣିଛି ମୋ ଅଭିଜ୍ଞତାରୁ
ଟିକିଏ କାଶିଲେ କିମ୍ବା ବାନ୍ଧିଦେଲେ ଯୋତାର ଫିତାକୁ,
ଅବା ଅଳ୍ପ ପାଟି କରି ଗାଳିଦେଲେ ହାକିମଙ୍କୁ ଯିବ
ଏହି ଇନ୍ଦ୍ରଜାଲ କଟି, ଯଦିଓ ସାମାନ୍ୟ
ଦରଜ ମନର କେଉଁ କୋଣେ ରହିଥିବ

କିଛିବେଳ (ମନ ଏକ ନୀଳବର୍ଣ୍ଣ ସମୁଦ୍ରର ସ୍ନେହ,
ପ୍ରତ୍ୟେକ ଢେଉରେ ତାର ଲୁକ୍‌କାୟିତ ମୁକ୍ତାର ଆଗ୍ରହ) ।

## ଭାସମାନ ଧନ

୧

ହାତ ମୋର ବଙ୍କା ଟଙ୍କା
ଗୋଡ଼ କନ୍ଥ ଭାଙ୍ଗିହୁଏ ନାହିଁ ।
ମୁଁ ବକ୍ର ଛବିଟିଏ ଚଉପଟେ ଯାର
ଆଦ୍ୟ ନାହିଁ ପ୍ରାନ୍ତ ମଧ୍ୟ ନାହିଁ ।
ସମସ୍ତ ହୋଇନି ମୋର ମାଆର ତାରଙ୍କ
ଭିତରୁ ଓହ୍ଲାଇ ମତେ ଗାଧୋଇ ଦେବାର,
ମୁଁ ତେଣୁ ଅପେକ୍ଷାକରେ ବାପାଙ୍କ ଲୁଣିଆ
ଲୁହର ପବିତ୍ର ଜଳେ ଘନରଇ ସ୍ନାନର ।

ସମସ୍ତ ନ ହେବା ଯାଏଁ ଚୁପ୍ ରହିଥିବ
ଶହ ଶହ ବର୍ଷ ପଛେ ଦଣ୍ଡପାଉ, ତମେ
ଶହ ଶହ ବର୍ଷ ଧରି ପ୍ରତ୍ୟେକ ରାତିରେ
ମୋ ସ୍ୱପ୍ନକୁ ଆସ ପଛେ ବସନ୍ତ ଧୂଆଁରେ ।
ମୋ କଥା ରହିଲା ବାକି ଶେଷ ସନ୍ଧ୍ୟା ପାଇଁ
ଯେତେବେଳେ ସବୁ ଗଳ୍ପ କଥା ଗୁଇଟିଏ
କଥା କହିପାରେ ନାହିଁ ଅଥଚ ଭାବେ ଯେ
ରାତିସବୁ ବୁଝେ ସବୁ ମାଫ୍ କରିଦିଏ ।

ସମସ୍ତ ନ ହେବା ଯାଏଁ ଗାଆଁର ପୋଖରୀ
ଶୁଖିକରି ପଡ଼ିଥିବ, ପରମାୟୁ ମୋର
ଛୁରିଖାରୁ ଦେଖି ପରି ଅପେକ୍ଷା କରିବ
ଗତକାଲି ଆସିଥାନ୍ତା ଯେଉଁ ଲୋକ ତାର ।
ଗତକାଲି ଆସିଥିଲେ ପ୍ରଜାପତିମାନେ,
ରକ୍ତର ଆସ୍ୱାଦ ଥିଲା ଶୁଖିଲା ଘାଟିରେ,
ମୁଁ କିନ୍ତୁ ଜାଣୁଚି ଆଜି ଗତକାଲି ସବୁ
ସ୍ୱପ୍ନ ଥିଲା, ଯେଉଁ ସ୍ୱପ୍ନ ପ୍ରତ୍ୟେକ ରାତିରେ
ଦେଖାଯାଏ ବାଆଁ କଡ଼ୁ ଡାହାଣ କଡ଼କୁ
ଯିବାର ଅନନ୍ତ ଆଉ ଦୁର୍ଗମ ବାଟରେ ।

୨

ନିର୍ମମ ଆକାଶ ବେଳ ଚପିଦିଏ
ସରଳ ଜହ୍ନର ।
ନିଷ୍ଫଳ ଗଛ ହିଁ ସାକ୍ଷୀ । କଇଁଫୁଲ ଫୁଟେ
ସନ୍ତର୍ପଣେ, ନିଜକୁ ଧିକ୍କାର
କରେ ତାର ଅସମୟେ ନିଆଁ ଲାଗି, ସବୁ
ଚିପିନେଲା ଡାଏରୀରେ ମୋର—
ଜହ୍ନର ଜମାନବନ୍ଦୀ ସରିବା ଆଗରୁ,
ଗଛମାନେ ଶୁଣିଥିବା ଆକାଶର କ୍ରୋଧଜର୍ଜ୍ଜରିତ
କଥା, କଇଁଫୁଲ ଦେଖାଇବା ଜାଗା ଯେଉଁଠାରେ
ଜହ୍ନଗୁଳ ହେଲା ଲୁକ୍କାୟିତ ।

•

ମୁଁ ଖାଲି ଅପେକ୍ଷା କରେ, ରାତି ପାହିଗଲେ
ପ୍ରତି ଦ୍ୱାର ପଛଆଡ଼େ ମୋ କଥା ଆଣିବ
କେତେ ଉତ୍ତେଜନା କେତେ ବୈଠକ ଓ କେତେ
ସ୍ୱପ୍ନ ପରି ଅମାପ ଗୁଜବ ।

୬

ରାତ୍ରି ଜନ୍ତୁ ମତେ କରେ ଆକ୍ରାନ୍ତ ଓ ମୋର
ରକ୍ତ ପାଣି ଫାଟେ ମୋର ମାଂସ ଝଡ଼ିଯାଏ,
ରାତ୍ରି ର ବେଗରେ ନିଏ ମୋର କଥା, ତାକୁ
ଓଲଟ ପାଲଟ କରେ, ମତେ ଶୁଣାଯାଏ
ମୋରି ସ୍ୱର, କହୁଅଛି ହେ କରୁଣାକର
ମୋର କେଡ଼େ ଭାଗ୍ୟ ଯାହା ଦେଖିଲି ଏ ରାତ୍ରି,
ଯୁଗେ ଯୁଗେ ମତେ ଦିଶୁ ସୌନ୍ଦର୍ଯ୍ୟ ତାହାର ।

# ବିଚ୍ଛେଦର ଦୁଇଟି ମଧ୍ୟାନ୍ତର

୧

ତମେ ଯାଅ ଯେତେବେଳେ ଟ୍ରାଫିକ୍ ଆଲୁଅ
ଲାଲ୍ ହୋଇ ଜଳୁଥାଏ, ପୁଣି ଯାଅ ପ୍ରାତଃଭ୍ରମଣରେ
ଶୀତଦିନେ ବନ୍ତି ଅଧେ ପିନ୍ଧି ଖଣ୍ଡେ ପାତଳା ଫତେଇ,
ଏବଂ ବୁଲିଯିବାବେଳେ ବାଡ଼ି ଧରି ସୁଠାମ ହାତରେ ।

କିନ୍ତୁ ଏଇ ସହରର
                    ଧ୍ୱଂସାବଶେଷରେ
ମୁଁ ଯେଉଁଠି ଏପର୍ଯ୍ୟନ୍ତ ଭୂମିଷ୍ଠ ନ ହୋଇଥିବା
ପର୍ଯ୍ୟଟକମାନଙ୍କ ଗାଇଡ୍,
ତମେ ଆସ ସୁନାରଙ୍ଗ ଅପରାହ୍ନ
ଲହୁଣି ଖସରେ,
ତମେ ଆସ ପର୍ବତଙ୍କ ଗୁଇଗୁଇ ପାଦଦେଶ ଡେଇଁ
ବୋହୁଥିବା ପବନର ଶୀତଳ ସ୍ପର୍ଶରେ ।
ମୁଁ ତୁମକୁ ଛୁଇଁ ପାରେ ନାହିଁ କିମ୍ବା
ଦେଖିପାରେ ନାହିଁ,
କିନ୍ତୁ ଜାଣେ ତମେ ଆସ
ମୋ ପାଉଣା ମତେ ଦେବା ପାଇଁ

ତମର ସ୍ୱରର ପ୍ରତିଧ୍ୱନିର ସଙ୍ଗୀତ,
ତମର ରୂପର ଶୋଭା ଯାର ପ୍ରତିବିମ୍ବ
ନଈର ମାଟିଆ ବନ୍ୟାରେ ପ୍ରତିଫଳିତ
ବିଷାଦ ବର୍ଣ୍ଣନା କରି ମୁଁ ପ୍ରସ୍ତୁତ କରିଥିବା ବକ୍ତୃତାର ଲାଗି
କେହିଁ ପଛେ ନ ଶୁଣନ୍ତୁ, ମୁଁ କି ନିଜେ ନୁହେଁ
ଯଥେଷ୍ଟ ମୋ ବକ୍ତୃତା ନିମିତ୍ତ ?

ମତେ ଯେଉଁ ଅଭିଶାପ ଚୂର୍‌ଣ କରେ
ତାହା ବି ଆକ୍ରାନ୍ତ କରେ ଅପାସୋର ସୌନ୍ଦର୍ଯ୍ୟ ତମର,
ସେଥିପାଇଁ ଏପର୍ଯ୍ୟନ୍ତ ଭେଟାଭେଟି ହୋଇନାହିଁ ଆମ ଦୁହିଁଙ୍କର ।
ମୁଁ ତୁମକୁ କଣ ବୋଲି ଡାକିବି ? ତମେ କ'ଣ ଅଟ
ମୋ ପ୍ରେମ ? ମୋ ଜନ୍ମଭୂମି ? ମୋ ପରମେଶ୍ୱର ?

୨

ମୋର ପିଲାଦିନେ ମୋର
ସାଙ୍ଗ ହୋଇଥିଲା
ଗ୍ରେଟ ଝିଅଟିଏ । ଦିନେ
ମୁଁ ଶୁଣିଲି ତାର ମୃତ୍ୟୁ ହେଲା ।
ସେ ଗ୍ରେଟ ଝିଅଟି ଲାଗି
କାନ୍ଦିଥିବି କେତେଦିନ ଧରି,
କେତେ ଖେଳକୁଟି ମୋର
କଟିଥିବ ତାକୁ ଝୁରି ଝୁରି ।

ତା'ରେ ବହୁତ ବର୍ଷ
ପରେ ଦିନେ ହଠାତ୍ ଭେଟିଲି
ତାକୁ କେଉଁ ଦୋକାନରେ, ଆଜି
ଗ୍ରେଟ ହୋଇ ନ ଥିଲା ସେ ତାର
ଦେହରେ ବହଳ ଚର୍ବି, ଡାହାଣ ହାତରେ

ସଜ୍ଜଦାର ଫୁଲ ଏବଂ ନମସ୍କାର କଲା
ଗୋଲଗାଲ ତା ବାଆଁ ହାତରେ ।

ମୁଁ ଘରକୁ ଫେରି ପୂର୍ବି
ସ୍ଲେଟ ଟିଅଟିକୁ
ସୁମର କାଢ଼ିଲ କନ୍ନୁ
ବାରମ୍ବାର ମୋହର ସ୍ୱପ୍ନକୁ
ପ୍ରବେଶ କରି ସେ ନାଶି
ଭାଙ୍ଗୁଥିଲା ବିଶ୍ୱର ନିଦକୁ ।
ତା ଆତ୍ମାରେ ଗଦା ଗଦା
ବିଜ୍ଞାପନ କେତେ ଜନ୍ମାନ୍ତର,
ତାର ମଧ୍ୟ ଥାଇ ପାରେ
ଏକ ରାଜନୈତିକ ବିସ୍ତର ।
ଯେ କନ୍ନୁ ଏକାକୀ ମତେ
ଛାଡ଼ିଦେଇ ଚାଲିଯିବା ପରେ
ଘର ସାରା ପୂର୍ଣ୍ଣ ହୁଏ ଏକ ବାସ୍ନା
ଯାହା ତା ଦେହରେ
ତା ମାଆ ଲଗାଇଥିଲେ । କେଉଁଠାରେ ?
ହାସ୍ପାତାଳେ ? ଅଥବା ବେଘାଟରେ ?

# ଯାଅ ନାହିଁ

ଅଦ୍ଭୁତ ଉପରଓଳ ! ମୋ ପାଇଁ ବାହୁନେ
ଯୁବଷ୍ଟି ମଶାଣିରେ । ତା'ହାତରେ ତୋଡ଼ାଏ ଗୋଲାପ ।
ତା ଚିକ୍‌କଣ କଳାବାଳ ଲେଟିଯାଏ ଢେଉ ପରି । କଣ
ତାକୁ ତେବେ କହିଦେବ ମୋ ମୃତ୍ୟୁର ସଠିକ କାରଣ ?
ତାହେଲେ ସେ ହସି ହସି ଗଡ଼ିପିବ, ଘରକୁ ଫେରିବ,
ଗୋଲାପମାନଙ୍କୁ ପୁଣି ଖଞ୍ଜିଦେବ ଗୋଲାପ ଗଛରେ ।

ଅନ୍ତରେ କହିଲେ ସତ୍ୟ ବଧିହୁଏ ଏପରି ଭାବରେ ।

କିନ୍ତୁ ସେ ଫେରିବା ପରେ ଗୃହଆଡ଼ ଷଣ୍ଢିକାମସ୍ତୁ ।
ଟେଲିଫୋନ୍ ଗୁଲିବନ, ବିଜୁଳି ଆଲୁଅ
ବନ୍ଦ ହେବ, ରେଳ ଲାଇନ୍‌ର ପ୍ରତି ସିଗ୍‌ନାଲ୍ ଖୁମ୍ବରେ
ହଠାତ୍ ଜଳିବ ଲାଲ୍ ଆଲୁଅ ଅସଂଖ୍ୟ
ବରଫ ପାଲଟିଥିବା ସୂର୍ଯ୍ୟଙ୍କର ଶାରଦ ଦୀପ୍ତିରେ ।

ତାପରେ ପଡ଼ିବ ବର୍ଷା ଟପ୍‌ଟାପ୍ ତଗରଫୁଲରେ ।
ତଗରଫୁଲ !

ଏକଦା ମୁଁ ସ୍ୱପ୍ନ ଦେଖିଥିଲି
ଗୁନ୍ଥିବି ତଗରମାଳ……

ବର୍ଷାରେ ଚଗଲ୍ଠ ଭଜେଜ, ଝରିପଡ଼େ କୋମଳ ପାଖୁଡ଼ା ।
ଖାଲି ଟିଣଡବା ସବୁ ରନ୍ଧାଘର ଥାକରେ ସଜଡ଼ା ।
କେଉଁ ନରାଧମ କାଲି ଛୁରୀ ଭୁଷିଦେଲା
ମଲା ଭକାଙ୍କୁ, ଏବେ ହସ ହସ ମୁର୍ଦ୍ଧାର ତାହାର
ସମ୍ଭୋଗ ପ୍ରାଚୀନ କୀର୍ତ୍ତି ଏଷ୍ଟୁ ଶ୍ୱେତବର୍ଣ୍ଣ ସହରର ।

ମୁଁ ତାପରେ ଏକା ଏକା ଯିବି, ମୋ ପଛରେ ଶୁଭୁଥିବ ହସ
ଚାଲୁଥିବା କରେଇରେ ଫୁଟୁଥିବା ସୋରିଷ ଯେପରି ।
ରସ୍ତାଙ୍କର ଚମ୍ପାବର୍ଣ୍ଣ ଲିଭିଯିବ, ଏବଂ ମୋର ଅକ୍ଷୟ ଅମର
ମୂହୂର୍ତ୍ତଙ୍କ ବଣ ଏକ ଭୂକମ୍ପରୁ ଅନ୍ୟ ଭୂକମ୍ପକୁ
ଲମ୍ବିଥିବ—କମ୍ବା ତାହା ଉଡ଼ୁଥିବା ଝରିବର୍ଣ୍ଣ ପାଚେରୀ
ଚଟାଙ୍ଗ କରୁଛୁ ଥୁଣ୍ଟା ଗଛଙ୍କର ଶୁଖିଲା କାଠରେ
ପୂର୍ଣ୍ଣ ମର୍ତ୍ତ୍ୟଧାମଠାରୁ ଅଙ୍ଗାର ପାଲଟିଥିବା ବୈକୁଣ୍ଠଧାମକୁ ।

(ତମର ଧାରଣା ଭୁଲ୍) ମୁଁ ଉପରେ ଥରୁନାହିଁ, ବରଂ
ଭାବୁଛି ଯେ ଭଲ ହୋଇଥାନ୍ତା ଯଦି କିଛି ଡର ଲାଗୁଥାନ୍ତା ମତେ,
ଯଦି ଏଷ୍ଟୁ କ୍ଷୁଦ୍ରାଦପି କ୍ଷୁଦ୍ର ସତ୍ତା ଚୂର୍ଣ୍ଣ ହେଉଥାନ୍ତା
ପର୍ବତ ପ୍ରମାଣ ଏକ ଢେଉର ଆଘାତେ ।
କିନ୍ତୁ ହାୟ ତାହା ଭାସେ
କାଠର ଢୁକୁଡ଼ା ପରି ଶବଙ୍କର ମହାସାଗରରେ,
ଏବଂ ମୋ ଅନ୍ତିମ ଧନ
ଥୁରୁ ଥୁରୁ ହୋଇ ଠିଆ ହୋଇଛନ୍ତି ସମୁଦ୍ରକୂଳରେ
ଅନାଥ ଶିଶୁଙ୍କ ପରି ମଇଳା ଓ ଗୁଡ଼ୁଗୁଡ଼ୁ ଲଗାଣ ବର୍ଷାରେ ।

ବର୍ଷା ପଡ଼େ ଟପ୍‌ଟାପ୍ ଚଗଲ୍ଠ ଫୁଲରେ ।
ମୁଁ ଯାହା କରଛି ଏବଂ ଯାହା କରନାହିଁ
ସବୁ ହୁଏ ଏକାକାର—ଆକାର ବହୀନ,
ଅସୁନ୍ଦର, ନଯଉଁପରି ବେଶ୍ୟାଙ୍କର ଭଡଥିବା ଧନ ।

ସେ ତେଣୁ ରହିବା କଥା ହାତେ ଧରି ତୋଡ଼ାଏ ଗୋଲାପ ।
ଛେଝ ଠେଉ କଲାବାଳ, ଯୋଡ଼େ ଆର୍ଦ୍ର ଆଖିଙ୍କ ଉତ୍ତାପ,
ବନ୍ଧାଘର ଯାର ସିଧା ବ୍ୟାକୁଳ ଆଲୁଅ
ଖୋଜେ ମୋର ଅନ୍ଧମୃତ୍ୟୁ ଯାହା ଭାସେ ମହାସାଗରରେ,
ଏବଂ ସନ୍ଧ୍ୟା ପୁନର୍ବାର ବଞ୍ଚିଉଠେ ଏପରି ଭାବରେ ।

# ଆମର ବିମର୍ଷ ଭାଗ୍ୟ

ମତେ ଯାହା ହତ୍ୟାକରେ ତାହା ମଧ୍ୟ ମୃତ୍ୟୁ ଫୁଲଙ୍କର,
ମେଘଙ୍କର ଓ ହର୍ବଲପୁର,
ମୋ ରକ୍ତକୁ ଯାହା କରେ ବରଫ ତାହା ହିଁ
ଶୀତରତୁ ଗାଆଁଗଣ୍ଡା ସହର ଓ ହାଟବଜାରର ।
ମତେ ଯାହା ଛନ୍ଦହଏ ପାହାଡ଼ ଓ ଆକାଶ ସମ୍ବୃତ
ଗଛ ଏବଂ ପବନ ସମ୍ବୃତ
ସେ ଆମ ବିମର୍ଷ ଭାଗ୍ୟ, ଘୂରିବୁଲେ ବର୍ଷରୁ ବର୍ଷକୁ,
ଶତାବ୍ଦୀରୁ ଶତାବ୍ଦୀକୁ ଦୁଆରମୁହଁ ବା
ଗଛଡାଳେ ବସିଥିବା ଘୁଘୁଙ୍କର ଅତି ପରିଚିତ ।

ଏହି ଭାଗ୍ୟ ଦିଶିଥିଲା ମୋ ସ୍ୱପ୍ନରେ ବହୁବର୍ଷ ତଳେ
ଚିରିଣ୍ଡା ଲୁଗା ପିନ୍ଧିଥିବା ସନ୍ନ୍ୟାସୀ ବେଶରେ ।
ମୁଁ ପ୍ରଥମେ ଉପହାସ କଲି ତାକୁ, ତାପରେ ଚିତ୍କାର
କଲି ଯେ ଏସବୁ ମିଛ, ଏହା ସତ୍ୟ ନୁହେଁ କେଉଁ କାଳେ,
ଏବଂ ସବେଁ ବା ତାର ଅସତ୍ୟତା ପ୍ରମାଣ କରିବା
ମୋ ଦାୟିତ୍ୱ, ମୁଁ ଚୁଟିଲି ଦୁନିଆଁକୁ ପାଗଳ ଭାବରେ,
ରୋଜଗାର କଲି, ଘର କଲି, ମୋର ପିଲାଛୁଆ ହେଲେ,
ତଥାପି ଆକୃତି ତାର ବାରମ୍ବାର ଦିଶିଲା ସାମ୍ନାରେ,
ବରଂ ମୋ ଧାରଣା ହେଲା ସେ ସବଁଦା ଜଗିଛି ମୋ ବାଟ
ମୋ ସଙ୍କ୍ଷିପ୍ତ ସୁଡ଼ଙ୍ଗର ଅନ୍ଧାର ମୂର୍ଦ୍ଧରେ ।

ଏତେଦିନ କଟିଗଲା କୋଳାହଳ ଭିତରେ—ମଣିଷ [illegible]।
ମାନଙ୍କର କୋଳାହଳ, ମଟର ଓ ରେଲ, ବ୍ୟୋମଯାନ
ଯିବା ଆସିବାର ଶବ୍ଦ, କଳକାରଖାନା
ଦିନଗତି ଚଳିବାର ଅକାଟ୍ୟ ପ୍ରମାଣ ।
ମୁଁ ଏକରକମ ସବୁ ଗହଳଚହଳ
ସ୍ୱାଗତ କରିଲି ନିଶ୍ଚିହ୍ନ କରିବା ଲାଗି ପୁରୁଣା ସ୍ୱପ୍ନରେ
ଶୁଣିଥିବା କେତେପଦ କଥାଙ୍କର ଉପସ୍ଥିତିର ନିତ୍ୟ ବର୍ତ୍ତମାନ ।
ତଥାପି ରହିଲା କେତେ ଫାଙ୍କା ରବିବାର,
କେତେଦିନ ଯେତେବେଳେ ଘରେ କେହି ନ ଥିଲେ, ଅଥବା
କେତେ ରାତି ଯେବେ ନିଦ ଭାଙ୍ଗିଯାଏ ଆଉଥରେ ନିଦ ହୁଏନାହିଁ,
ସେତେବେଳେ ଏ ଆକାଶ ଦିଶେ ଖୁବ୍ ବଡ଼, ସେତେବେଳେ
ଫୁସ୍‌ଫାସ୍ କଥାବାର୍ତ୍ତା ଗଛମାନଙ୍କର
ସୂର୍ଯ୍ୟାସ୍ତ ବେଳପୁ ଯାଉ କୁହୁକସ୍ପର୍ଶରେ
ଅପେକ୍ଷାର ଗୀତ ଶୁଣେ ତାଙ୍କର ମୁକ୍ତ ଅନ୍ତଃପୁରେ,
ସେତେବେଳେ କାକରରେ ତିନ୍ତିଥିବା ଫୁଲଙ୍କ ଦରଦି
କଥା ଶୁଣେ, ମନେ ଲାଗେ ମୁଁ ବି ଏକ ଛୋଟପିଲା ମୋର
ପାଖେ ଶୋଇଥିବା ପିଲାମାନଙ୍କଠୁଁ ବୟସରେ କମ୍
(ଯଦିଓ ମୋ ମୁଣ୍ଡପାକ ଧଳାବାଳ ଓ ଗଣ୍ଠିରେ ବାତର ବିକାର)

ଓ ତାପରେ ଧୀରେ ଧୀରେ ଦିଗ୍‌ବଳୟର
ଝିଲ୍‌ମିଲ୍ ପର୍ଦ୍ଦାରେ ବା ଅନ୍ଧାରର କଳାପଟା ଦେହେ
ଛିଣ୍ଡାଲୁଗା ପିନ୍ଧିଥିବା ସନ୍ନ୍ୟାସୀର ନିର୍ଭୁଲ୍ ଆକୃତି
ଆପେ ଆପେ ଆଙ୍କି ହୋଇଯାଏ ।
ସବୁ କୋଳାହଳ ହୁଏ ପରାଜିତ ସୈନ୍ୟବାହିନୀର
ବିଗୁଲ୍ ଆବାଜ ପରି ଅନ୍ତର୍ହିତ, ବାଟଘାଟ ଏବଂ କୋଠାବାଡ଼ି
ମିଳାଇ ଯାଆନ୍ତି ଦୀର୍ଘଶ୍ୱାସ ପରି ଝାପ୍‌ସା ସମୟରେ ।
ଯେଉଁ ବର୍ଷା ସୃଷ୍ଟି କଲା ନଈନାଳ ହ୍ରଦ ଓ ସମୁଦ୍ର
ସମସ୍ତ ଏ ଯାଏଁ ତିନ୍ତେ ସେ ଅଜସ୍ର ବର୍ଷାର ପାଣିରେ ।

ମୁଁ ତାକୁ ମାଗିଛି କଣ ? ଅବଶ୍ରାନ୍ତ ଖଟିବାର ଫଳ ?
ସେ ତ ମତେ ମିଳଅଛି—ବାତଗ୍ରସ୍ତ ପ୍ରତଚେଣ୍ଟି, ମୁଣ୍ଡ୍ରଯାକ ଝୋଟପର ବାଳ,
ଅସୁଖୀ ଘରଣୀ ଏବଂ ପିଲମାନେ ଅସ୍ଥିର ଦେବାଙ୍କ
ସୀତାର୍ରେ ଗୋଟେ ଗୋଟେ ତାର ।
କପର ମାଗିବ ଅବା ? ମୁଁ ହେଲଣି ଅଂଶ ତା ସ୍ୱପ୍ନର
ଯେଉଁଥିରେ ମୋ ଶରୀର ନଈ ପରି ଅଗ୍ରସର ହୁଏ
ସମୁଦ୍ର ଆଡ଼କୁ—ତା ନମ୍ରମ ଆଶ୍ଳେଷକୁ କଏ
ମୃତ୍ୟୁ କହେ, ଓ ପୁନର୍ମିଳନ
କହେ ଅନ୍ୟ କଏ ।

# କର୍ମଚାରୀ

ତମେ ମୋର ସଂକ୍ଷିପ୍ତ ସ୍ୱପ୍ନରେ
ଥିଲ ଏକ ସନଷ୍ଟଚା—ଆହୁରି ସଂକ୍ଷିପ୍ତ—
ଓ ତାପରେ ଶାପଗ୍ରସ୍ତ କୁହୁଡ଼ି ସତିରେ
ପରି ହେଲ ଅନ୍ତର୍ହିତ, କରି ଉନ୍ମୋଚିତ
ବକ୍‌ବାର୍‌ ବଞ୍ଚଣା ଓ ନିର୍ଲିପ୍ତ ଚଉକୀ,
ସୁନାକାନ୍ତି ଗୁଣ୍ଡ଼ି ଥିବା ଅଜଣା ପ୍ରଭାତ ।

ତମେ ଗୁଣ୍ଡ଼ି ଦେଇଗଲ ପ୍ରତିଶୋଧ-ପରିପୂର୍ଣ ଝଡ଼,
ଲୋକଙ୍କର କୋଳାହଳ, ସମ୍ବାଦପତ୍ରର
ବଡ଼ପାଟି, ଏବଂ ଦୁଆରର
ଠକ୍‌ଠକ୍‌ ଶବ୍ଦ ଗଡ଼ଗଡ଼ର ।
ଆକାଶର ସୂର୍ଯ୍ୟ ବୁଲେ ବୃଦ୍ଧ ମୃତଦାର
ଭଦ୍ରଲୋକ ପରି, ଓ କ୍ରମଶଃ ଅସ୍ପଷ୍ଟ ଆହ୍ୱାନ
ଆସୁଥିଲା ପ୍ରଜାପତି ପଲ ପରି ଉଡ଼ି
(ତମ ସୁବାସିତ ରକ୍ତ ଡେଣାରେ ସବୁଜ)
ଉଦ୍ୟାନକୁ ଯେଉଁଠାରେ ବଧୀର ନୃପତି
ଶୁଣୁଥିଲେ ଦୁର୍ଗତ ପ୍ରଜାଙ୍କ ଗୁହାରି ।

ରଜାଙ୍କର ପ୍ରଶ୍ନ ଶୁଣି ପ୍ରଜାମାନେ କେବଳ ହସିଲେ ।
ସେମାନଙ୍କ ହସ ଧଇ ମୂଲ୍ୟବାନ ମଣିପରି ରଜା
ଘରେ ଧୋବ ଜ୍ଞଆଓକୁ, ସେଠାରେ ସଣ୍ଢାର
ଟିକ୍‌ଟିକ୍ ଅବାଜର ଘୋ ଘୋ ଗହଳ ଭିତରେ
ଶୁଭେନାହିଁ ସଙ୍ଗୀଙ୍କ ଉତ୍ତର ।

ଚଢ଼େଇ ଚଲେଣି ଉଡ଼ି କେତେବେଳୁଁ , ଦିଗ୍‌ବଳୟରେ
ଦର୍ଜା ବନ୍ଦ ହୋଇଯାଏ ସାତେ ଦଶଟାରେ ।

# ଗୃହସ୍ଥ

ମୁଁ କୃତଜ୍ଞ ତମ ପାଖେ
ତମେ ବସି ରହିଥିଲ ମୋର ଅପେକ୍ଷାରେ
ଖୁବ୍‌ବେଳ, କେତେବର୍ଷ ଅନ୍ତତଃପକ୍ଷରେ ।
ଇତି ମଧ୍ୟେ ଶ୍ରେଷ୍ଠ ଶ୍ରେଷ୍ଠ ବୃକ୍ଷଗଛ ମହାଦ୍ରୁମ ହେଲେ
କୀଟମାନେ ଜନ୍ମ ହେଲେ ଏବଂ ମଲେ ।
ମୋ ମନରେ, ପ୍ରତ୍ୟେକ ଅଙ୍ଗରେ
କ୍ଲାନ୍ତ, ପ୍ରିୟଦେହ ରଖିଥିଲି ଚଉକି ଗୃହିତ
ରେଜେଇ ପର ଓ ମୋର ଶେଷକଥା ପ୍ରତ୍ୟେକ ପାଟିରେ
ରଖିଥିଲ ନଦ ହେବା ବଟିକା ଯେମିତି

ଏଣିକି ଆଗରେ ଢଣେ ଅସରନ୍ତି ଅନ୍ଧାର ସଡ଼କ,
ପ୍ରାଚୀନ ପଥର ବାଡ଼ ଦୁଇପାଖେ, ଏବଂ ତା'ର ଧୂସର ଧୂଳିରେ
ସଞ୍ଜଦୀପ ଝିଲ୍‌ମିଲ୍ । ସେତେବେଳେ ଉଡ଼ି ଯାଉଥିବା
ବାଦୁଡ଼ି ବି ଦେଖୁଥିଲେ ସାର୍ଥକତା ବଞ୍ଚି ରହିବାରେ ।
ତା'ପରେ ବାଦୁଡ଼ିପଲ ଉଡ଼ିଗଲେ
କେଉଁଦୂର ପିଜୁଳି ଚୋଟାକୁ
ଆକାଶର କଳାପାଟ
ଢାଙ୍କିଦେଲା ଆମ ଢ଼ ଜଣଙ୍କୁ ।
କାକର ପବନ ଦେଲା ପୋଛି ତମ
କପାଳରୁ ବୁନ୍ଦାବୁନ୍ଦା ଝାଳ ।
ଆମେ ଦୁହେଁ ପରସ୍ପରେ ଚିହ୍ନିଲୁ, ତମେ ମୋ
ସୁନ୍ଦରୀ ବିଧବା ଏବଂ ମୁଁ ତମର
ସ୍ୱାମୀର କଙ୍କାଳ ।

ଏ ସଡ଼କ ଯାଏ ଏକ ବନ୍ଧୁତ୍ୱ ଦେଶକୁ
ଯେଉଁଠି ଶତାବ୍ଦୀମାନେ ମ୍ୟୁନିସିପାଲିଟି
ବଗିଚ୍ଚରେ ଫୁଲପରି ଫୁଟନ୍ତି, ଯେଉଁଠି
ତରମାନେ ଝୁଲୁଥାନ୍ତି ଝରକା ପାଖରେ,
ଯେଉଁଠି ତମର ଦେହ ମିଶିଯାଏ ଦିଗ୍‌ବଳୟୁ ଡେଇଁ
ବ୍ୟାପିଥିବା କରୁଣାର ଶ୍ୱେତ ଆଲୋକରେ ।
ତମର ଭର୍ତ୍ସନା କମ୍ବା ଶାଢ଼ୀ ତଳେ ଲୁକ୍‌କାୟିତ
ଧନୁ ଆଉ ଶର
ମତେ ଆଉ ଆତଙ୍କିତ କରିବେନି,
ମୋ ପୁରୁଷକାର
ପର୍ବତ ସହିତ ଅଟେ ଏକାକାର, ହସହସ ତସ୍ଟ ଫୁଲଙ୍କ
ନିର୍ମମ ଝଡ଼ରେ ଏବେ ପଦେ ପଦେ
ମୃଦୁ ପ୍ରତ୍ୟୁତ୍ତର ।

ତମେ ଏଠି ରହିଥାଅ, ତସ ଏବଂ ତସ୍ଟ ଫୁଲଙ୍କ
ଗହଣରେ । ରଖିଲେ ପଛକେ ରଖ ଆମ ଦୁହିଁଙ୍କର
ଦୁର୍ଭାଗ୍ୟର ଟୁକୁଡ଼ାଏ, କିନ୍ତୁ ଦେଖ ସମୁଦ୍ର ମାଡିଲା
ଆକାଶକୁ ଜଳୁଥିବା ଫୁଟ୍‌ବଲ୍, ଓ ଚୌହଦ୍ଦୀ ମୋର ଯନ୍ତ୍ରଣାର
କ୍ରମେ କ୍ରମେ ସ୍ପଷ୍ଟ ହୁଏ (ଯେଉଁପରି କ୍ଷୁଧାର୍ତ୍ତ ଅସୁର) ।

ତମେ ଏଠି ରହିଥାଅ
କିନ୍ତୁ ଥାଅ ମୋର ଅପେକ୍ଷାରେ ।
ଆଉଦିନେ ଫିଟିଯିବ
ମାତ୍ର କେତେ ସମ୍ବତ୍ସର ପରେ ।
ଦିନପରେ ଦିନ ବିତେ, ସମୁଦ୍ରର ମାଟିଆ ଲହଡ଼ି
କୂଳରେ ଝାଙ୍କିଲା ପରି, କୂଳ କେଡ଼େ ଅସ୍ନା ଦିଶେ
ଯନ୍ତ୍ରଣା ହୃଦର, ଭଙ୍ଗା ହାଣ୍ଡି ଆଉ
ଟସ କାଗଜରେ ।

# ଜନନୀର ସ୍ନେହ

କ ଫୁଲ ଫୁଟିଛୁ ଏହି ଇଲାକାରେ ?
ଯେଉଁ ଫୁଲ ପିନ୍ଧିଥିଲା ସମୁଦ୍ର ତା
ଅସ୍ତବ୍ୟସ୍ତ ବେଣୀରେ,
ସମୁଦ୍ର
ବାଘୁଣୀ ମାଆଟିଏ ତାର ନଅନପିଛୁଳା
ସନ୍ତାନକୁ ଛଳଛଳ କରି ହଣ୍ଟା କରେ,
ତା ରକ୍ତକୁ ନିଜ ରକ୍ତ ସହିତ ମିଶାଇ
ତା ସହିତ ଏକାକାର ହେବାପାଇଁ
ଅଧୈର୍ଯ୍ୟ ଇଚ୍ଛାରେ ।

ଏଠି ମାଟି ଧରିଅଛି କଳଙ୍କି, ଏଠାରେ
ପବନରେ ପଚ୍ଚଗନ୍ଧ, ଚନ୍ଦ୍ରାଲୋକ ଯାଏ
ଲୁଚି ଲୁଚି ବକଲାଗ ଶୋକଙ୍କ ଭିତରେ
ବିକୃତ ମୁଦ୍ରାରେ ସ୍ଥାଣୁ ଘରଙ୍କର
ଫାଙ୍କେ ଫାଙ୍କେ ଏକ
ଶୂନ୍ୟତାକୁ ଯେଉଁଠାରେ ଖନେଇ ଖନେଇ
କହୁଥିବା ପିଲାଙ୍କର ସ୍ୱର ଶୁଭେ
ଆତଙ୍କିତ ପଶଙ୍କ ଭିତରେ ।

ବାଘୁଣୀ ମାଆଲୋ ! ତୋ ପାଖରେ ଏସବୁର
କିଛି ହେଲେ ଅର୍ଥ ଅଛି ? ତୋର

କଣ ଯାଏ ଆସେ ଯଦି ଶୁଭେ ନାହିଁ
ଦେଉଳରୁ ଶବ୍ଦ ମୃଦଙ୍ଗର ?
ଝାଟିମାଟି କୁଡ଼ିଆର ଅନ୍ଧାର ପିଣ୍ଡାରେ
ଜଳେ ନାହିଁ ଯଦି ସଞ୍ଜବତୀ ?
ତଥାପି ରହିଛି କିଛି କୋଳାହଳ—ବିଲୁଆ ବୋବାଏ,
ନାନାଦି ସମୁଦ୍ରପକ୍ଷୀମାନଙ୍କର ଡେଣା ଝାଡ଼ିବାର
ଶବ୍ଦ ମଧ୍ୟ ଏକ ଅଭିବ୍ୟକ୍ତି ।
ତୋ ନିର୍ମଳ ସାଗରାମି ଅସ୍ପୃଶ୍ୟ ହୁଏ ନାହିଁ
ଝାଳରେ ବା ଲୋକଙ୍କ ସ୍ପର୍ଶରେ,
ଲୋକଙ୍କର ପିଲାଙ୍କ ପ୍ରଶ୍ନ ଖାଲି
ଆବର୍ଜନା ଆକାଶମାର୍ଗରେ ।

କି ଫୁଲ ଫୁଟିଛି ଏହି ଇଲାକାରେ ?
ଯେଉଁ ଫୁଲ ବେଶି ଦାମ୍
ସ୍ୱର୍ଗପୁରେ ଇହଲୋକଠାରୁ,
ଯେଉଁ ଫୁଲ ଜାତ ହୁଏ ଅପ୍ସରାମାନଙ୍କ
ଆକସ୍ମିକ ସନ୍ତପ୍ତ ଲୁହରୁ ।
ଏ ଦେବଭୂମିରେ ଲୋକେ ଅସଙ୍ଗତ, ସେମାନେ କେବଳ
ପରସ୍ପରେ ପଚାରନ୍ତି, ଆପଣଙ୍କ ସର୍ବାଙ୍ଗ କୁଶଳ ?
ଖୁବ୍ ହେଲେ ପଚାରିବେ ପଞ୍ଚାୟତ ନିର୍ବାଚନ କଥା ।
ହତଭାଗ୍ୟ ନପୁଂସକ ! ବଳାତ୍କାରେ ପୁଷ୍ପିତା ସମସ୍ତ
ଲୋଡ଼େ ଅନ୍ୟ ରହସ୍ୟର ବର୍ଣ୍ଣାଢ୍ୟ ସ୍ତବ୍ଧତା ।

ତୋ ସହିତ ଆଳାପରେ କି ଲାଭ,
ବାପୁଣି ?
ତୁ କିଛି ବୁଝିବୁ ନାହିଁ, ତା ଛଡ଼ା ପିଲାଏ
କେତେବେଳୁଁ ମଶାଣିରେ ଲେଣି ।

## ବନ୍ଦୀର କାୟାକଳ୍ପ

୧

ସଡ଼କ ନିର୍ଜନ ସତ, ତଥାପି ରୂପେଲି
ହଂସ ପରି ପହଁରୁଛି ଜହ୍ନର ଆଲୁଅ,
ଜଙ୍ଗଲର ସର୍‌ହଦ୍ ଆବୋରି ବସିଛି
ପକ୍ଷୀଙ୍କ ନିଦରେ ପୂର୍ଣ୍ଣ ଓଦା ଢର୍‌ବଲସୁ ।

ମୋ ଜୋତା ଚକଟି ଗଲେ ଝଡ଼ାପତ୍ର, ସ୍ପଷ୍ଟ
ଝିଅଟିଏ କାନ୍ଦଉଠେ ମାଆର କୋଳରେ ।
ମାଆଲୋ, କହିଲୁ କିଆଁ ଆଜି ତୋ ହତାଶା
ହଠାତ୍ ପ୍ରଗଲ୍‌ଭ ହେଲା ବିନା କାରଣରେ ?

ଆଜି ଗୀତ ଗାଉଅଛି ଝିଙ୍କାରି ଅନେକ
ଶତାବ୍ଦୀର ନିରୁଦ୍ଦିଷ୍ଟ ଚଟିଧରଙ୍କର,
ଆଜି ଶ୍ରାନ୍ତ ମଟରର ଧକ୍‌କାରେ ନିହତ
ମେଘପରି ମଫସଲ ଦେବଦୂତଙ୍କର ।

ସେ ଫେରନ୍ତି ଝଳଝଳ ବିରସ ଉଦ୍‌ବେଗେ ।
ଠିଆହୋଇ ମୋ ଦୋଚାଲି ଛାଚରେ କହନ୍ତି,

ତମେ ଯିଏ ଏକା ଏକା ବୁଲୁଥିଲ
ନବେଲା ବସ୍ତାରେ
ତମେ ନଣ କାଟିଦଅ ଖୋଲିଦଅ
ଟାଇ କମିଜରୁ,
ବାଷ୍ପ ହୋଇ ଉଡ଼ି ଯାଇଥିବା ତା ମା'ଆର
ଶେଷ ଇଚ୍ଛାଥିଲା ତମେ ଏ ଝିଅକୁ ତମର ଗୃହରେ
ଥରେ ହେଲେ ଜାକଧର
ମରିବା ପୂର୍ବରୁ ।

୨

ସହଝଡ଼ ଯାଇଥିବା ଗଛମାନେ ଠିଆ ହୋଇଛନ୍ତି
ଇଟାଘର ସାମ୍‌ନାରେ ହାଡ଼ମାଳ ଭିକାରୀଙ୍କ ପରି,
କିନ୍ତୁ ଏହି ସୁନାରଙ୍ଗ ଶଯ୍ୟାଗାର
ଆଚ୍ଛାଦିତ ଅଶେଷ ସ୍ୱପ୍ନରେ
ଏବଂ ଦାନ୍ତ ଚିପି ହାତ ମୁଠାକରି
ମୁଁ ବସିଛି ତାର ଅଗଣାରେ ।

ଶୁଖିଲା କୂଅକୁ ଗଗ ବାଲ୍‌ଟି ଧରି ଯିବା ଲୋକଙ୍କର
କୁଡ଼ କୁଡ଼ କଙ୍କାଳରେ ପରିପୂର୍ଣ୍ଣ ଏ ମରୁଭୂମିରେ
ଜଣେ ମାତ୍ର ଲୋକ ଅଛି—
ସୁଲ୍‌ତାନ୍, ସେ କାନ୍ଦିବ ନାହିଁ
ଅସଂଖ୍ୟ ବ୍ୟାକୁଳ ଲୋକ ଡାକୁଥିଲା ବେଳେ
ତା ରାଜ୍ୟରେ ପାଟେଶ୍ୱରୀ ବାହାରେ
ସେ ବସି ରହିବ ଶବ ସାମିଆନା ତଳେ ।
ହାଓ୍ୱାର ବାର୍ତ୍ତାରେ କିଛି ମାନେ ନାହିଁ । ପ୍ରତ୍ୟେକ ମୁହୂର୍ତ୍ତ
ଛିଡ଼ିଲା ତା ଅସରନ୍ତି ମରୁଡ଼ିର କର୍କଶ ସ୍ୱରରେ ।

ଯେତେଥର ଦୂର୍ ଦୂର୍ କଲେ ବି ସେ
ବାରମ୍ବାର ଆସେ ଦୁଆରକୁ
ଖାଲି ଭିକଥାଳ ଧରି । ବସି ରହିଲେ ବି
ବନ୍ଦ କରି ଆଖି ଓ କାନକୁ
କେତେ ଛଦ୍ମବେଶ ଧରି ସେ ଫେରେ । ମାଆର
ନିର୍ବୋଧ ସ୍ନେହ ବା କେଉଁ ସ୍ତ୍ରୀଲୋକର
ଅର୍ଦ୍ଧ ମାରବତା
କିମ୍ବା ନଗ୍ନଛିଆ ଗଳି ମୋଡ଼ ଏକ ଅଚିହ୍ନା ଲୋକର
କୁଶଳ ଜିଜ୍ଞାସା ରୂପେ ଅଗଣାକୁ ଫେରେ ପୁନର୍ବାର ।

ସବୁ ଦର୍ଜା ବନ୍ଦ ହେବ
ସବୁ ରାସ୍ତା ଆଗକୁ ଦୁର୍ଗମ,
ଏବଂ ଏହି ଅଭ୍ୟନ୍ତର କୋଣେ କୋଣେ
ରକ୍ତପାତ, ଭୀଷଣ ସଂଗ୍ରାମ ।
ଚରବାଘ ବାଜିବାର ଶବ୍ଦ ଶୁଭେ
ଇସ୍ପାତ ଢାଲରେ
ଓ ସଦର୍ପ ସେନାପତି ନେକ୍ଟାଇ
ବାନ୍ଧେ କମିଜରେ,
ସଦର୍ପେ ସେ ଜଣମୋଡ଼େ ତଥାପି ଏ
ଉତ୍ସମାନେ ପ୍ରଥମ ଯାମର
ଉକାଶମାନଙ୍କ ସାଙ୍ଗେ ଏକ୍ଜୁଟ୍,
ପବନ ତା କାନଫଟା ଉକ୍ତିଅ ରଡ଼ିରେ ଆଙ୍କେସେ
ନୀଳବର୍ଣ୍ଣ ଦ୍ୱିଧା ମୋର ବସ୍ତୁସ୍ଥ ଅମ୍ବର ।

୩

ଝିଅ ଲୋ ଗାଆ ସେ ଗୀତ ଗାଆନ୍ତି ଯାହାକୁ
ଲୋକମାନେ ପ୍ରିୟଜନ ମରିଯିବା ପରେ,

ଯେଉଁ ଗୀତ ମୂର୍ଚ୍ଛିତହସ ବସିଥାଏ ବୁଢ଼ାଙ୍କ
ଧୁକ୍ରୁ ଧୁକ୍ରୁ ତମବେଢ଼ା ଦଦର ମୁହଁରେ

ଦେଇଯା ମୋ ତରବାରି, ମୁକୁଟ ଓ ମୋର
ବାକ୍ୟ ଓ ଐଶ୍ବର୍ଯ୍ୟଶାଳୀ ଅକ୍ଷରର ଛବି,
ହାଓ୍ୱାରେ ସୁବାସ ପରି, ଅକ୍ଷୀଣ ରକ୍ତରେ
ଗୀତର ମୂର୍ଚ୍ଛନା ପରି ମୁଁ ଆଜ ବ୍ୟାପିବି ।

ଏ ଜନ୍ମ ଆଲୁଅ ଏବଂ ରକ୍ତର କାଳର
ମତେ ଚୂନା କରିଦେବେ ଓଜନ ଖୁସିରେ
ମୁଁ ରେଣୁ ରହିବି ତୋର ମୁହଁରେ ଯେଉଁଠି
ଲୁହଧାର ଅନ୍ଧାରୁଆ ଭଉଁରୀ ଅନେକ
କଟାହର ଯୁବକଙ୍କର, ଅର୍ଥହୀନତାର,
ଯାର କ୍ଷତ ଅଲଭ୍ୟ ତୋ ଦମ୍ଭାର୍ଦ୍ର ମୁହଁରେ ।

ଟିଏ ଲେ ତୋ ସୌନ୍ଦର୍ଯ୍ୟରେ ଆଚମ୍ବିତ ହୁଏ
ଇତିହାସ, ବାସୀଗନ୍ଧ ସୂକ୍ତିତର୍କଙ୍କର
ଆତ୍ମହତ୍ୟା କରେ । ମତେ ଯଦିଓ କଏ ସେ
କହ୍ଣ ପଶ୍ନରେନ ସବୁ ବୁଦ୍ଧି ହୋଇଯାଏ,
ଏବଂ ତୋ ବସନ୍ତ ହସ ସୁନେଲି ଖରାରେ
ମୁଁ ଉଡ଼ୁଚି ଏଣେ ତେଣେ ପ୍ରଜାପତି ପରି,
କାଳରରେ ଓଦା ଢେଣା, ସତ କାହାଣୀର
ଭଗ୍ନାବଶେଷର ବନ୍ଧୁ ଯୋଜନ ଉପରେ ।

## ଆତ୍ମୀୟସ୍ୱଜନଙ୍କ ଭାର ଚତୁରଟି କବିତା

୧

ଚାଲ ଆସେ ଖେଳିବା ଆମର
ହସମାନେ ସାମ୍ନାସାମ୍ନି ହୁଅନ୍ତୁ ପର୍ଯ୍ୟନ୍ତ
ଦୁହିଁଙ୍କର ଦୃଷ୍ଟି ଥିବ ତଳକୁ ପର୍ଯ୍ୟନ୍ତ
ମତେ ଖାଲି ଦେଖାଯିବ ତମ ପାଦ
ଝୋଟିପର ତୋଫା ଆଜ ଅବସ୍ମରଣୀୟ ।
ତମକୁ ଦିଶିବ ଖାଲି ମୋର ଯୋତା,
ତାହାହିଁ ଉଭୟ
ଘରର ମୁରବୀଙ୍କର ଇଚ୍ଛା ଥିଲା ।
ଆଜି ତେଣୁ ଖେଳପଡ଼ିଆରେ
ଆମର ମିଳନ କିମ୍ବା ମୁକାବିଲା
ଏକା କଥା ଦୁନିଆଁ ଆଖିରେ ।
ତଥାପି ବି ବେଳେ ବେଳେ
ଉଠିଥିଲେ ସନ୍ତ୍ରସ୍ତ ଘୁହାଣି
ପାଞ୍ଚ ଛଅ ଫୁଟ ଲମ୍ବା ମରୁଭୂମି ଭିତରେ ଯେଉଁଠି
ହରଦମ୍ ନିଆଁ ଜଳେ,
ପବନର ବିକଟାଳ ଗର୍ଜନ ନ ଶୁଣି
ଘୃଣାର ନିଆଁରେ ସିଝି ।
ପରସ୍ପରେ ଯେବେ ଭେଟାଭେଟି

ଗୋଟାପଣେ ଭିଜିଥାଏ ଲୁଣିଆ ପାଣିରେ
ତମ ଦୃଷ୍ଟି ଏବଂ ମୋର ଦୃଷ୍ଟି ।

କିନ୍ତୁ ତମେ ହାଇମାର, ସେ ବାସ୍ତବର ବହଳ କୁହୁଡ଼ି
ଆମକୁ ଚପାଡ଼ି କରେ ।
ଜନ୍ତୁମାନଙ୍କ ହସମାନେ ସାମ୍ନାସାମ୍ନି ହୁଅନ୍ତି, ଆମର
ମୁଖରେ ହୁଏଆଁ ସୁନ୍ଦୀ, ଏବଂ ମୋ ଆଖିରେ
ପଡ଼େ ପୁଣି ତମ ପାଦ, ଅପାସୋଷ ଲବଣ୍ୟ ତାହାର,
ସେ ପାଦର ଇମେ କମେ ସ୍ଫୁରିତ ହେବା, ଇତିହାସ ହେବା,
ଅବଶେଷେ ନିଶ୍ଚିହ୍ନ ହେବାର ।

୨

ତମର ଓ ମୋର ଯେତେ
ଶତ୍ରୁତା ତାହାର
ନିଆଁରେ ଅଙ୍ଗାର ହେବେ
ଦେବଦେବୀ ପ୍ରତ୍ୟେକ ଦେଶର ।
ବରଂ ମାନେ ଶାନ୍ତିପ୍ରିୟ,
ଛୁଆଙ୍କର ଜନ୍ମମୁହୂର୍ତ୍ତରେ
ହସୁଥାନ୍ତି, ବରଂ ମାନେ ପହଁରନ୍ତି
ନଈର ସେ ନିଭୃତ କୋଣରେ
ଯେଉଁଠି କୂଳର ଗଛମାନଙ୍କର ଛାଇ ମିଶେ
ଛପ୍ ଛପ୍ ଜହ୍ନ ଆଲୁଅରେ ।
ସେମାନେ କରିବେ କ'ଣ ତମର ଓ ମୋର ଏହି
ସମୁଦ୍ର ଭିତରେ
ଯେଉଁଠି ଅପରିଚ୍ଛନ୍ନ ଢେଉଙ୍କ ଭର୍ତ୍ସନା
ଶୁଭୁଥାଏ ତୀରଙ୍କ ଦୁଆରେ ?

ଦେବଦେବୀମାନଙ୍କଠୁଁ
ଏ ଜାଗାରେ ସାହାଯ୍ୟ ମିଳେନ,
ଯେମାନେ ବୁଝନ୍ତି ନାହିଁ କେଉଁପରି ଶହର ଛାତିରେ
ଖରସ୍ରୁଏ ପ୍ରଚ୍ଛନ୍ନ ଧମନୀ,
ଆମରି କୁହୁକ ଆଖି କେଉଁପରି ସୃଷ୍ଟି କରେ
ଲଗ୍‌ଲଗ୍ ସ୍ୱପ୍ନଙ୍କ ନାଟକ
ପକେଟ୍‌ରେ ସ୍ୱର୍ଣ୍ଣମୁଦ୍ରା ଭର୍ତ୍ତିକରି
ଅସାଧ ସାଧନ କରେ ଯେଉଁଠି ପ୍ରେମିକ,
ବା ପ୍ରେମିକା ଋପ୍ କରେ ଶବମୋଜା
ବା କମିଜ୍ ଛିଣ୍ଡି କରୁଥାଏ,
ତା ବେକରେ ଚୁମା ଦେଲେ ଏପରିକି ଆଲିଙ୍ଗନ କଲେ
ଚଣ୍ଡୀକୁଣ୍ଟୀ ଖାଲି ହସୁଥାଏ ।

୩

ଆଜି ମୋର ଭାବନାରେ ପକ୍ଷୀଲାଗେ, ଆଜି ମୋ ଭାବନା
ଅନାୟାସେ ଅତିକ୍ରମ କରେ ଆମ ଦୁହିଁଙ୍କୁ ଚଫାତ୍
କରୁଥିବା ପାହାଡ଼କୁ ବୁଦା ବୁଦା ଜଙ୍ଗଲ ଯାହାର
ସୁବାସିତ କରେ ଆମ ଦୁହିଁଙ୍କ ବଛଣା ।

ମୁଁ ଆସିଛି ଘୋଡ଼ା ଚଢ଼ି, ଫଟଟଇରୁ ଝାଳଗନ୍ଧ ହୁଏ,
ନିଃଶ୍ୱାସର ଯୁଗ ଯୁଗ ଶୋଷ ଆସେ ଗୋଡ଼ ଟିପି ଟିପି
ତମ ବାଳ ନିକଟକୁ, ପ୍ରଥମ ବର୍ଷାରେ
ଭିଜିଥିବା ବଣ ବାସ୍ନା ଗୋସ୍ଥ ଗୋସ୍ଥ କଇଁଫୁଲଙ୍କର
ବାସ୍ନା ଆଜି ସମୁଦ୍ରେକ କସ୍ତୁରୀର ବାସ୍ନା ତମ ଅଥୟ ବାଳରେ ।
ମୁଁ ଆସିଛି ଫିଙ୍ଗିଦେଇ ଯାହା ଥିଲା ଓଜନ୍‌ଦାର୍ ବା
ଅଖାଡ଼ୁଆ, କୋଟ୍ କୁର୍ତ୍ତା ପାକସ୍ଥଳୀ ଯକୃତ୍ ପ୍ରଭୃତି ।
ମୁଁ ଆସିଛି ପର୍ବତଙ୍କ ଗୁଇଠଳେ ଶୋଇକରି ଏବଂ
ମୁଁ ଦେଖିଛି ପକ୍ଷୀମାନେ ବ୍ରେସିଅର୍ ଖୋଲିଦେଇ ଗୀତିକ ନାଚନ୍ତି

ସୋଉଷ ଫୁଲଙ୍କ ଆର୍ଦ୍ର ଚଟାଣରେ, ମୁହଁରେ ମୁହଁକୁ
ଯୋଡ଼ି ଦେଇ ସ୍ତ୍ରୀମାନେ କାନ୍ଦୁଥାନ୍ତି, ଘରମାନେ ବଂଶଧରଣୀ
କହୁଥାନ୍ତି ଓପାସରେ ବସିଥିବା ଅନାଥ ଛୁଆଙ୍କୁ ।

ତମ ବନ୍ଦ ଦୁଆରର
ଅନ୍ତରଙ୍କୁ ଉଦାସ ଉତ୍ତର—
ଅତିଶୀଘ୍ର ଚାଲିଯାଇ ଘୋଡ଼ାଶାଳେ
ଘୋଡ଼ାଟିର ଦେଖାଶୁଣା କର ।
ମୁଁ ମୋର ବଫଳ ଡାକ
ଚଢ଼ିକରି ଫେରିବା ସମୟେ
ବେଳାସ୍ତ ତନ ଓ ଦୁଧ ମିଶିଥିବା ଗୃହାରେ ତମର
ଶୁଖିଥିବା ଆତ୍ମା ଓଦା ହୁଏ ।
ତମ ଦେହେ ପୋଡ଼ାଗନ୍ଧ
ବଣପୋଡ଼ି ଜତୁଗୃହ ଦାହ
ପାଠ ଆଜ ପୀତାମ୍ବରେ ପୋଡ଼ୁଥିବା ଗନ୍ଧ ଆଜ
ପୋଡ଼ା ଧାନ ପେଟ୍ରୋଲ କାନ୍ଦୁଅ ।

ମୁଁ ରହିଛି ଘୋଡ଼ାଶାଳେ, ରାତି ମୋର ଦୀର୍ଘ ଓ ଅନ୍ଧାର ।
ଘୋଡ଼ା ତ ଗଲାଣି ମରି, ଆଜ ନ ହେଲେ ବି
ଦିନାକେତେ ପରେ ନଷ୍ଟ ହୋଇଥାନ୍ତା ଦେହାନ୍ତ ତାହାର ।
କିନ୍ତୁ ତମେ କହ କଣ ଆସିଥିଲ ଏତେଦୂର ବାଟ
ଚିହ୍ନଟ କରିବା ଲାଗି ତମର ନୈଶତମ ଏକାକୀ ସ୍ଥିତିକୁ
ମୋ ସ୍ୱପ୍ନଙ୍କ ରକ୍ତେ ଧଳା ସକାଳ ପର୍ଯ୍ୟନ୍ତ,
ଯେତେବେଳେ ଏକମାତ୍ର ଗଛି ମୋର ଗ୍ଲେଟେଇ ଗ୍ଲେଟେଇ
ଫେରିଯାଏ ହକ୍‌ଦାର୍ ମରିବାର ଆଦିମ ନଦୀକୁ ?

୪

ଆମ ଭିତ୍ତିଘର ଦିନ ବୁଢ଼ୀ ରକ୍ଷାସୁଣୀ
ଆସିଥିଲା, ତମକୁ ସେ ଦେଲା ଚଢ଼େଇଟି

ପାଗଳ ଡାଳିମ୍ବ ପରି ଲାଲ୍ ଶର, ମତେ
ଦେଲ ଧନୁ, ନାନାବିଧ ଶର ।
ଶିଖରେ କଳଙ୍କି ଲାଗେ, ଚଢ଼େଇର ଶବ
ସଢ଼ିଯାଏ, ଏପରି ଭାବରେ
ଦୁହିଁଙ୍କର ମନସ୍କାମ ପୂର୍ଣ୍ଣ ହୁଏ ମୁଁ ତମକୁ ଅବା
ତମେ ମତେ ଛୁଇଁବାର ସ୍ୱପ୍ନ ଆରମ୍ଭରେ ।

ଆମର ହତାଶା କ'ଣ ହିଲ୍ଲେକସୁନ୍ଦରୀ,
ପିନ୍ଧିଛି ନିଆଁର ସାୟା ? ତା ବିପଜ୍ଜନକ
ପବିତ୍ରତା ଆଗେ ସବୁ ଶବ୍ଦ ତରଳିଲେ ।
ଆମେ ଖାଲି ବସିରହୁଁ ଦିନ ଦିନ ଧରି
କାଳେ ବା ଆସିବ ଏକ ସବୁଜ ଆତଙ୍କ,
କାଳେ ସେ ଉଠାଇନେବ ତଣ୍ଟିରୁ ଆମର
କେଉଁ ଚମତ୍କାର ଶବ୍ଦ ଯେଉଁଥିରେ ଥିବ
ମନ୍ତ୍ର ଆଜି ନିଆଁ ଆଜି ଟୁପ୍‌ଟୁପ୍ ଲୁହ
ପବନ ଆକାଶ ଆଜି ଅନିଦ୍ରା ଦେହର
ପାପ ଆଜି ଛୁଟୀ ଆଜି ଅଳସ ମଧ୍ୟାହ୍ନ
ବହୁତ ପ୍ରତିଜ୍ଞା କରି ଦେବ ବୋଲି ତମେ
କହିଥିଲ, ମୁଁ ବି କହିଥିଲି ଆମ ବିଭାଘର ଦିନ ।

## ଧାନକ୍ଷେତ

ଧାନ କ୍ଷେତ ଅତନ୍ତର, ଖାଲି ଯାହା ଖୁଣ୍ଟା ହଳଦିଆ
ମୂଳମାନଙ୍କରୁ ବୁନ୍ଦେ ଠପ୍ ଠପ୍ ସ୍ଫଟିକ କାକର,
ଧାନକ୍ଷେତ ମନପରି ଯେଉଁଥିରେ ସୁଖଦୁଃଖ କିଛି ନାହିଁ; ଖାଲି
ରହିଛି କେବଳ କିଛି ନିରୁଦ୍‌ବିଗ୍ନ ସ୍ମୃତି କେବକାର ।

ଧାନକ୍ଷେତ ଦିନେ ଥିଲା ସବୁଜ ଏବଂ ଧାନଗଛମାନେ
ସବୁଜ ଅସୁରୁଣୀ ପରି ଗିଳିବାକୁ ଆସୁଥିଲେ ଖରା ଓ ଆକାଶ,
ଧାଡ଼ି ଧାଡ଼ି ତାଳଗଛ ବୋଲହାକ କଲା ଲୋକ ପରି
ଠିଆ ହୋଇଥିଲେ ଏବଂ ସଞ୍ଜବେଳେ ଗାଆଁର ନିର୍ଜନ
ଗୋହିରୀରେ ଲକ୍ଷ ଲକ୍ଷ ସବୁଜ ଦୀପମାନଙ୍କ ସୁବାସ ।
ସେଥିରେ ଫାଇଦା କଣ ? ବୁଢ଼ାଲୋକେ ମଲେ, କେତେଜଣ
ପିଲା ମଧ୍ୟ ମଲେ, କେତେ ଘର ପୋଡ଼ିଗଲା ଓ କେତେକ
ନାରୀଙ୍କର ଅକାଳରେ ଗର୍ଭପାତ ହେଲା ଏବଂ ତହିଁ ଆରଦିନ
ସକାଳେ ପୁନଶ୍ଚ ଖରା ରାତିବେଳେ ପୁଣି ଚନ୍ଦ୍ରାଲୋକ,
ପୁଣି ମେଘ ଢାଙ୍କିଦିଏ ବିଦ୍ୟାଧର ବିଦ୍ୟାଧରୀମାନଙ୍କ ନଗ୍ନତା,
ପୁଣି ଟମେ ଲଲ୍ କସ୍ତା ପିନ୍ଧି ଡାକ ଅପ୍ରସନ୍ନ ଯୋଗିନୀର ଡାକ ।

ଧାନକ୍ଷେତ ଅତନ୍ତ୍ର, ଗୋଟି ଗୋଟି କରି
ପ୍ରତ୍ୟେକ ରହସ୍ୟ ଏବଂ ପ୍ରତ୍ୟେକ ବଡ଼ିମା

ଶୀତ ଋତୁ ଭଙ୍ଗ ହେଲା, ଶୀତ ଋତୁ ଆସିଥିଲା ନାନା ରୂପ ଧରି,
ପିଲା ହୋଇ, ଗାଈଗୋରୁ ହୋଇ ଏବଂ ନାନା ହତିଆର
ହୋଇ, ଶୀତଋତୁ ଆସିଥିଲା ଗସ୍ତାକଡ଼େ ପୁରୁଣା ସ୍ୱେଟର୍
ବିକୁଥିବା ଲୋକ ହୋଇ, ତା ସଫେଦ୍ ଦାଢ଼ିରେ ଆମର
ଆଖି ମୁଗ୍ଧ ହୋଇଗଲା, ଯୋଡ଼ହସ୍ତେ ପ୍ରାର୍ଥନା କରିବା
ଆଗୁଁ ଆମେ ଦେଖିଲୁ ଯେ ଆମେ ଠିଆ ନିଜ ନିଜ ଘରେ,
ଆମ ଦେହେ ଫଳ ନାହିଁ, ଓ ଶୋଚନା ଠପ୍‌ଠପ୍ ହୋଇ
ବୋହିଯାଏ ଫ୍ରେମ୍‌ବନ୍ଧା କୁନ କୁନ ଫଟୋମାନଙ୍କରେ ।

# ମୁହୂର୍ତ୍ତଙ୍କ ପୂର୍ଣ୍ଣାଙ୍ଗ ଜୀବନ

ଏଠାରେ ପାହାଡ଼ ଦିଶେ ପାବ୍‌ଜା
ପୁଣି ଦିଶେ ଧୂସର ଓ କଳା
ଏଠାରେ ପଡ଼ିଆ ଜଳେ ଦିପହର ଝାଞ୍ଜିରେ ଓ
ସଞ୍ଜବେଳେ ପବନରେ ଥୁରୁଥୁରୁ ହୁଏ,
ଏଠାରେ ମେଘର କେତେ ରଙ୍ଗ ଏଠାରେ ତାରାଙ୍କ
ଅନୁନୟ ବିନୟରେ ରାତିପାହିଯାଏ ।

ଏଠି ମୋ ଦେହାନ୍ତ ହୁଏ, ଏଠି ପୁଣି ମୁଁ ପିଲା, ମୋ ଦେହ
କି ସୁନ୍ଦର ଦିଶେ ଖାଲି ହାଫ୍‌ପ୍ୟାଣ୍ଟ୍ ଖଣ୍ଡିକରେ, ଏବଂ ତା ବ୍ୟତୀତ,
ଏଠାରେ ତମର ମୋର ଘୋର ଯୁଦ୍ଧ ଯେଉଁଥିରେ ମୋର ପରାଜୟ
ମତେ ଭଲଲାଗେ । ଏଠି ତମ ଦେହର ନିଖୁତ
ଗୁଳଗୁଳ ସଡ଼କର ପ୍ରତି ମୋଡ଼େ ମଧୁର ସ୍ମୁରେଇ ।
ମୁଁ ତମକୁ ଘୃଣାକରେ ହତ୍ୟାକରେ ଅଥଚ ତମର
ଅସ୍ଥି-ଧର ଫେରି ଆସି ଭାବେ ଯେ ମୁଁ ଯିବ ଦେଶାନ୍ତର
ବଦ୍ରିନାଥ ହରିଦ୍ୱାର ଚପ୍ଳା ପୁଷ୍ପ ରାମେଶ୍ୱର ଯିବ,
ମୁଁ କିନ୍ତୁ ଉପ୍ଲାକ୍ତ ଖୁବ୍ କାଳେ ମୋର ନିଃସଙ୍ଗ ଭ୍ରମଣ
ବେଳେ ତମ ଖିଲ୍ ଖିଲ୍ ହସୁଥିବା ଯୌବନକୁ ହଠାତ୍ ଭେଟିବ ।

ଏଠାରେ ମୋ ପଛେ ପଛେ ଦୈତ୍ୟମାନେ
ଦଉଡ଼ନ୍ତି ଚଢ଼ିକରି କାକର ପବନ ।

ମୋ ଆଖିଠୁଁ, ଆକାଶକୁ ଲମ୍ବିଥିବା ବାଟକୁ ଅବରୋଧ
ଶାଳପତ୍ରମାନେ କିନ୍ତୁ କରୁଛନ୍ତି ମୋର ଜୟଗାନ ।
ମୁଁ ବାଟ ଅଣ୍ଡାଳି ଗଲେ
                    ଅନ୍ଧ ହୋଇ ଆଲୁଅର ସ୍ମୃତି ଅଭିମୁଖେ
ମୋ ଆଖିଠୁଁ ଆଜିଥରେ ଉଇଁବାକୁ ନାରାଜ ସୂର୍ଯ୍ୟକୁ
                    ଲମ୍ବିଥିବା ସଙ୍କୀର୍ଣ୍ଣ ସଡ଼କେ ।
ମୁଁ ପୁଣି ତପସ୍ୟା କରେ
                    ବସି ମୋର ଅନ୍ଧକାରଙ୍କର
ପବନ ଦେଉଳ ଦେହୁଁ ଖସିଥିବା ପଥର ଉପରେ
ଅକସ୍ମାତ୍ ପଦ୍ମ ହୁଏ କାନ୍ଦଣା ଯାହାର ।

ଅଳ୍ପକରେ ନୀଳବର୍ଣ୍ଣ ଆକାଶ ହୁଅନ୍ତା
ରକ୍ତବର୍ଣ୍ଣ, ଶୁଖିଯାନ୍ତା ସମୁଦ୍ରର ପାଣି
କିନ୍ତୁ ମୋର ଲେଷ୍ଟକୋଷ୍ଟ ବଛଣାରୁ
                    ବିଷାକ୍ତ ଶରରେ
ଘାଏଲ୍ ଚଢ଼େଇ ପରି
                    ଉଠି ଧୀରେ ଧୀରେ
ଗୁଳିଯାଏ ମୋର ଦୁଃଖ, ତମେ କିଏ ଶଇତାନ୍ କିମ୍ବା ଦେବଦୂତ ?
ଏଠାରେ ମୁଁ ଶୁଣେ ତମ ଅଟ୍ଟହାସ୍ୟ, ତମେ କଣ ମୋର
ଜୀବନର ଦର୍ପଣ ନା ରେକ୍ଠୋକ୍ ଶେଷ ଭବିଷ୍ୟତ ?

ଏକ ଆଚମ୍ବିତ ଦୃଶ୍ୟ ଦେଖ ଭାଇ ଦେଖ
ବାପ ମାଆ ଆଜି ପୁଅ ଜନ୍ମ ହେଲେ ଗୋଟିଏ ସମୟେଁ ।
ଧୋ ଧୋ କମ୍ପୁଥିବା ବଜାର ଭିତରେ
ଚଳୁଥିବା ଲୋକମାନେ ମୂକ ।
ଏ ସବୁ ସଙ୍କେତ ଭାଇ ବୁଢ଼ୀଙ୍କ ମୁହଁରେ
ଗାର ପରି ଚିରସ୍ଥାୟୀ ଓ ନିର୍ଦ୍ଦିଷ୍ଟ ବିପଦମାନଙ୍କ,

ଭୟଙ୍କର ଯେଉଁପରି ଅମଙ୍ଗଳ ରକ୍ତବର୍ଷା ଯେବେ
ଯୁଦ୍ଧ ଲଗି ସଜବାଜ ଚାଲେ ଦେଶଯାକ ।
ଏ ମୋର ଧାର୍ମିକ ମନ ମୋର ହାତ ରକ୍ତ ଜର୍ଜ୍ଜରିତ
ସ୍ୱେଚ୍ଛାସେବକଙ୍କ ପରି ଧୂମାକ୍ତ ଓ ମଝିରେ ମଝିରେ
ହଠାତ୍ ଉଠନ୍ତ ଜହ୍ନ ଆଲୁଅ ପୋଷାକ
ପିନ୍ଧିଥିବା କୁହୁଡ଼ର ବିବ୍ରତ ଡାକରେ ।
ସମସ୍ତେ ଶୋଇବା ପରେ ବସି ରହେ କାହା ଅପେକ୍ଷାରେ
ସହରର ଅପଲକ ବିଜୁଳି ଆଲୁଅ ?
କାହାପାଇଁ ? ଶେଷ ଟ୍ରେନ୍ ଚାଲିଗଲା ତବଙ୍କ ଭିତରେ ।
ମୁଁ ଦୁଃଖିତ, ମାତ୍ର ନିରୁପାୟ ।

## ଖବର୍ ଆସେ

ଖବର ଆସେ କି ପ୍ରକାରରେ ? ପିଜୁଳି ଗଛକୁ
ଖପ୍ କରି ଡେଉଁଥିବା ମାଙ୍କଡ଼ ପ୍ରକାରରେ ।
ଖବରର କି ଲମ୍ବା ଗୋଡ଼ ! ଦୁଇତିନି ତାଳ
ଘର ଉପରକୁ ଚଢ଼ି ସକାଳୁ ସକାଳୁ
ଫିଟିଥିବା ଝରକାକୁ ରଙ୍ଗ କରେ, ଖବର ଡେଇଁପଡ଼
ଆତୁର ପ୍ରେମିକ ପରି ପାହାଡ଼ ପ୍ରମାଣ
କୋକେଇକୁ ବଞ୍ଚିଦିଏ ରୂପାଖଇ ସୁନାର କଉଡ଼ି ।

ଖବର ଆସେ ଛପି ଛପି,
ତରଙ୍କର ପ୍ରତିବିମ୍ବ ସବୁ
ହଠାତ୍ ହଜେଇ ଦେଇ ହଟବାକ୍ ପୋଖରୀହୁଡ଼ାରେ,
ଖବର ଆସେ କୁହୁଡ଼ିର ପଛେ ପଛେ କେଉଁ
ଗୋବର ଚକ୍ ଚକ୍ ଛୁଆ ମୁମୂର୍ଷ ମାଆର
କାନ ଧରି ଉଠି ଆସେ ଆକାଶର ପାହାଚ ଉପରେ ।
ଖବର ଆସେ ଠକ୍ ଠକ୍ କରି ଦୁଆରକୁ
ବନ୍ଦ ଅରଣ୍ୟର, ଅଭିଶପ୍ତ କୋଳପ ହଲାଇ,
ଖବର ଆସେ ଶବ୍ଦ ଶବ୍ଦ ପ୍ରଶ୍ନ ପରିର ଓ
ଉଙ୍କିମାରି ବାହାରର ଗଛଡ଼ାଳଙ୍କୁ, ତାକୁ

ଆଲିଙ୍ଗନ କରିବାକୁ ଲୋଡ଼େ ପଥ ଗହଳ ଭିତରୁ
ଅଧୈର୍ଯ୍ୟ କାନ୍ଦଣାଟିଏ, ଖବର ଆସେ ଆଉ
ଭୁଲିଯାଏ ଏ ଦେଶର ପାହାଡ଼ ଉପରୁ
ଖରାର ହଳଦୀ ରଙ୍ଗ ସ୍ୱପ୍ନ ପଡ଼ିରହେ,
ବୃଦ୍ଧ ଦଅଁ ମାନଙ୍କର ଆଗ୍ନେୟ ନିଃଶ୍ୱାସେ
କାଳିସମେ ଜଳିଯାଇ ସନ୍ଧ୍ୟାବେଳ ହୁଏ ।

## ଶେଷ ଦିନ ଅସରନ୍ତ ଦିନ

ଅନିବାର୍ଯ୍ୟ ଥିଲା ଆମ ଭେଟାଭେଟି
ପୁଣି ତାହା ଏପରି ବେଳରେ
ପଦାକୁ ଆସିବା ଲାଗି କେହି ହେଲେ ଅନିଚ୍ଛୁକ ହେବ
ବିଶେଷତଃ ସ୍ତ୍ରୀଲୋକ ସାମ୍ନାରେ ।
ଏପରି ବେଳ ସେ ଥିଲା ଯେତେବେଳେ ଅଡୁଆ ଖାଇବା
ନଇଦାଢ଼େ ଠିଆ ହୋଇ ନିଜକୁ ପଚାରି
ତମପରି ଲୋକ କଣ ଉପଯୁକ୍ତ ଅଟେ
ଆତ୍ମହତ୍ୟା ପରି ସିଧାସଳଖ ମୃତ୍ୟୁର ?
ଏପରି ବେଳ ସେ ଥିଲା ଯେତେବେଳେ ଜହ୍ନର ବୁଡ଼ିବା
ଜଣା ଯାଉଥିଲା ତମ ଜୀବନର ସ୍ୱର୍ଗୀୟ ପ୍ରତୀକ
ଅନ୍ଧାର ରାତିରେ ବର୍ଷା ପତ୍ରଙ୍କ ଉପରେ
ପଡ଼ିବାର ଶବ୍ଦ ପରି ଅସରନ୍ତ ମୁହୂର୍ତ୍ତଗୁଡ଼ିକ ।

ଏହା ମଧ୍ୟ ଅନିବାର୍ଯ୍ୟ ଥିଲା
ଆମ ଭେଟାଭେଟି ପରେ
ମୁଁ ବୁଲିବି ମରୁଭୂମି ପାହାଡ଼ ପର୍ବତ
ଡେଇଁ ନାନା ଗାଆଁ ଓ ସହରେ,

ମୋ ପାଖେ ନ ଥିବ କିଛୁ
ଛାଡ଼ିଦେଲେ ତମ ଅଲୌକିକ
ଆସିବାର ସ୍ମୃତି ଏବଂ ଘୃଣା ଏହି ଦେହର ଉପରେ ।
ଏ ଦେହ କେବଳ ଜାଣେ ଦୁଆରୁ ଦୁଆରୁ
ବୁଲି ବୁଲି ଭିକ ମାଗିବାକୁ
ସନ୍ଧ୍ୟାବେଳ ପବନରେ ବାସ୍ନାପରି ତମର ନଗ୍ନତା
ବିଚ୍ଛୁରିତ ହେଲବେଳେ ସନ୍ତୁଷ୍ଟ ହେବାକୁ ।

ମୁଁ ବୁଲିବି ଦେଶୁଁ ଦେଶ
ମରୁଭୂମି କିମ୍ବା ନୁହେଁ ଏକ
ବହୁତ ପର୍ବତମାଳା
ତା ଭିତରେ ବନେ ଅଗ୍ନିକ
ମୁଁ ଦେଖିବି ମୋ ସମସ୍ତ
ବସିଅଛୁ ଆତତାୟୀ ପରି
ମୋ ବାଟକୁ ଚାହିଁ ତମ ଛବି ଅଙ୍କା
ଫାଶୀ ହାତେ ଧରି ।

ଏହା ସବୁ ଅନିବାର୍ଯ୍ୟ, ଯେତେବେଳେ ତମେ ଆଲିଙ୍ଗନ
କଲ ମତେ, ଏବଂ ତମ ଛାତିରେ ମୁଁ ବୁଡ଼ିଗଲି
ହଠାତ୍ କେଉଁଠି
ଭୂମିକମ୍ପ ହେଲା, କେଉଁ ସହରର ରକ୍ତାକ୍ତ ଦେଉଳ
କୋଠାଘର ବିଦ୍ୟାଳୟ ଗାଡ଼ି ଘୋଡ଼ା
ବ୍ୟକ୍ତିଗତ କୃତିତ୍ୱର କଳକବ୍ଜା
ସବୁ ଭାଙ୍ଗି ଧୂଳିସାତ୍ ହେଲା ।
ମୁଁ ଶୁଣିଲି ତମ ହୃଦ ଧଡ଼ଧଡ଼ ଶବ୍ଦ ପରି
ଏକାଧାରେ ସନ୍ତୁଷ୍ଟ ଓ ଭୀଷଣ ଭୟକାତ ।

ମୁଁ ଜାଣିଛି ଏହା ଅଟେ ଅନିବାର୍ଯ୍ୟ
ତମେ ଥିବ ମୋର ଅପେକ୍ଷାରେ
ମୋ ପାଇଁ ଉଦ୍ଦିଷ୍ଟ ଏକ ଚକ୍ ଚକ୍ ଫାର୍ଶାର ଇସ୍ପାତେ
ଅପରନ୍ତ ସମ୍ଭୋଗର ବାଧବାଧକତା
ଆଖିରେ ଓଠରେ ଏବଂ ସମଗ୍ର ଦେହରେ ।

## ଭାରତର ତନିଟି ପ୍ରଧାନ ଋତୁ

୧

ଜନ୍ମବାକୁ ସଜବାଜ ବସନ୍ତ ଭିତରେ
ମରିବାରେ କଷ୍ଟ ହେଲେ ଶୃଙ୍ଖଳାନ୍ୟ ନାହିଁ,
ମାମୁଲି ଅଚେତ ହେବା ମୁଣ୍ଡ କଣ୍ଢେଇବା
ନାହିଁ, କମ୍ପା ଏକ ନିର୍ଦ୍ଦିଷ୍ଟ ବେଳରେ
ସବୁର ନାହିଁ ଅଗୋଚର ଅନ୍ଧାର ଭିତରୁ
ରେଳଗାଡ଼ି ପରି ଛୁଟେ କେଉଁ ଜଣାଶୁଣା
ସକାଳର ସହରକୁ ଭଙ୍ଗା ଲାଇନ୍‌ରେ ।

ପଡ଼ିଆରେ ଓ ଗଳିକନ୍ଦିରେ
ଭଙ୍ଗାରୁଜା ବିବେକର ଆବର୍ଜ୍ଜନାପୂର୍ଣ୍ଣ କୋଠରୀରେ
ଅଚଳ ପାପୁଲି ବସି ରହେ ମନସ୍ତାପେ,
ଡାକବାଲା ପରି ବୁଲେ ଆତ୍ମା ଖୋଜ ନଖୋଜ ଠିକଣା ।
ତମେ ଭଲଅଛ ପରି ଶବ୍ଦ ମରିଗଲେ
ଜନଶୂନ୍ୟ ମରୁଭୂମି ହୋଇଥିବା ମନର ହଠାତ୍
ମଧ୍ୟାହ୍ନର ପ୍ରଖର ଉତ୍ତାପେ ।

୨

ଏଠାରେ ସବୁଜ ରଙ୍ଗ ଗଦା ଗଦା,
ଧାନ କ୍ଷେତ ହିସେ

ସବୁଜ ସମୁଦ୍ର ପରି
ଏଠାରେ ଧୂସର
ରଙ୍ଗ ଗଦାଗଦା ମୁଣ୍ଡ ଉପରେ, ଏଠାରେ
ବର୍ଷାର ରୁଦ୍ରାକ୍ଷମାଳା ଆକାଶ ଜପନ୍ତି
ଧୂସରୁ ରଙ୍ଗର ମେଘମାନଙ୍କର
ପର୍ଦ୍ଦା ଉହାଡ଼ରେ ।

ଦୁହିଁଙ୍କର ଖୁଣ୍ଟାମଣା
ଧନଯାତ୍ର ଏବଂ ରକ୍ତସ୍ରାବ ।
ସେବାଟେ ମଟର ନେଇ
ଚୂଲଯାଏ ଷଦେଶୀ ଷଗୃଷ
କେଉଁ ଫାଙ୍କା ଦୂରତ୍ୱକୁ ।
ତା' ଆଖିରେ ଛଳ ଛଳ ଲୁହ,
ବର୍ଷାଦିନେ ସବୁ ଓଦା,
ରାସ୍ତାଘାଟ, ଦେହ ଆଉ ମୁହଁ

୩

ଆଗରୁ ତମର ଆତ୍ମା ଲୁକ୍କାୟିତ ଥିଲା
ବର୍ତ୍ତମାନ
ଶରୀର ବି ଆଚ୍ଛାଦିତ,
ଅସଂଖ୍ୟ ଫୁଲରେ
ଶୋଭିତ ରେଜେଇ
ଦେହ ଆଉଁସିବା ଲାଗି
ବ୍ୟାକୁଳ ପ୍ରେମକୁ ତଡ଼େ
ମଖ୍ମଲ୍ ଠାକ୍ସ ଠାପରରେ ।

ଶୋଇରହ, ଶବମାନେ,
ବାକ୍ୟଠାରୁ ବୃହତ୍ତର ଚଞ୍ଚଳ ଆବେଗ
ଥରନ୍ତୁ ସନ୍ତର ଶୀତେ
ଓ ଦେଖନ୍ତୁ ତମର ନଭୁଚ
କୋଠିର ଅଟଳ ଲୁହା ଦର୍ଜା ଦେଇଁ
ଉପରି ନଗିଡ଼ ପଡ଼େ ଅକ୍ଳାନ୍ତ କାକର,
ଉପରି ଗଛଙ୍କ ଗୁଇ ଲମ୍ବିଯାଏ ।
ତମର ଓ ପୃଥିବୀର ମତରେ ଗର୍ହିତ
କଥାର ଆଳାପ ଗୃଲେ ତସଙ୍କ ଭିତରେ ।
ଆକାଶରେ କୁହୁଡ଼ରେ ଅବାରିତ ପ୍ରତିଧ୍ୱନି ତା'ର ।
ଗୁହ୍ଁ ଗୁହ୍ଁ ଗୃଲଯାଏ ଝଷଣ୍ଡ ସମସ୍ତ
ସିନ୍ଦୂର ଫାଟିବା ଆଗୁଁ ପୁଣି ଜନ୍ମାନ୍ତର ।

ଯେତେବେଳେ ତମ ସତ୍ତ ପାନ୍ତୁଯିବ
ଓ ନ ଥିବ ଆଜ ସୂର୍ଯ୍ୟୋଦୟ,
ସେତେବେଳେ ଏଣ୍ଡୁ ଶବ
କେଡ଼େ ସ୍ୱାଂସ୍ତ୍ର, ପ୍ରତିଶୋଧପ୍ରିୟ !

# ମେଘ

ମେଘ ଉଠେ ପାହାଡ଼ ଉପରେ,
ଉଚ୍ଚ କୋଠାଘର ଛାତ ଉପରେ, ମେଘର
ମୁହଁ ହସ ହସ ମେଘ କାନ୍ଦିବ କି କଣ,
ଆଲିଙ୍ଗନ କରିବାକୁ ମେଘ ଆଗଭର,
ପଛଘୁଞ୍ଚା ଦେଉଥିବା ମୋ ଜୀବନ ଯାଚେ
ନିଷିଦ୍ଧ ମେଘକୁ ତାର ଶେଷ ନମସ୍କାର ।

ନୀରବ ଗୀତର ଲୁହ
ମେଘର ଆଖିରେ,
ମେଘ ମୁଣ୍ଡ ପୋଛିଦିଏ,
ମୁଣ୍ଡଭର୍ତ୍ତି ଅଲରା ବାଳରେ,
ହାତ ମୋର ଥରିଯାଏ
ଏ ମାମୁଲି ହାତର ଶିରାରେ
ଖାଲି ନେସ୍ୱ ରକ୍ତ ଯାହା
ଟିଣ ଟିଣ ମିଳେ ବଜାରରେ ।

ମେଘ ମନା ମାନେ ନାହିଁ
ଓଦା ଓଦା ନିଃଶ୍ୱାସରେ ଡାକେ ।
ବର୍ଷାର ଅତର ଲାଗି
ମୋର ମୃତ୍ୟୁ ହଠାତ୍ ମହକେ ।

# ହଠାତ୍ ଦିନେ

ଆମର ସାକ୍ଷାତ ହୁଏ
ବହୁ ବର୍ଷ ପରେ
ଦେଉସ୍ତରଙ୍କର ନାନା ବୟସର ସନ୍ତାନସନ୍ତତି
ମାନଙ୍କର ସମଭିବ୍ୟାହରରେ,
ଯେମାନେ କି ଅନିବାର୍ଯ୍ୟ ପରପୃଷ୍ଠା ପରି
କାହାଣୀର ଯେଉଁଥିରେ ପ୍ରେମିକପ୍ରେମିକା
ହେଲେ ଦୁଇ ଗଛ ଅବା ଦୁଇ ବାଲିକୁଦ ।
ଆମେ ଦୁହେଁ କଥାବାର୍ତ୍ତା କଲାବେଳେ ଏକ
ଫାଙ୍କା ସୌଧ କାନ୍ଥୁଁ ଆସି ଛିନ୍‌ଭିନ୍ କରେ
ସୁନ୍ଦର ପୁରୁଣା ଗୀତମାନଙ୍କର ନିଦ ।
ଆଉ କଣ କେଉଁଠାରେ ଅଛି ଖାଲି ଜାଗା
ଯେଉଁଠାକୁ ତମେ ମତେ ଟାଣି ନେଇଯିବ
ହାତ ଧରି, ଏବଂ ମାତ୍ର ଗୋଟିଏ ହସରେ
ପାଉଁଶିଆ ଅକ୍ଷତ ଓ ରକ୍ତହୀନ ବଳକା ଆୟୁଷ
ଅନାୟାସେ ନିଶ୍ଚିହ୍ନ କରିବ ?

ନିଜେ ନିଜେ ଲେଖିନେଲୁଁ
ଯ.ହା. ଆମେ ପରସ୍ପରରେ ଦେବା କଥା ଥିଲା ।
ଆଜି ଖାଲି ଦେଇ ପାରୁଁ
କପେ ଚାହା, ବା ପିଲାମାନଙ୍କୁ
ବିସ୍କୁଟ୍, ପିଲାମାନେ କାହିଁକି କେଜାଣି
ବିଦେଶରେ ପଡ଼ିଥିବା ସୈନ୍ୟଙ୍କର ମୁର୍ଦ୍ଧାର ଉପରେ
ମେଘ ପରି ଭାସିଯାନ୍ତି ଶୂନ୍ୟ ଆକାଶରେ ।

# ନର୍ତ୍ତକୀ

ସେ ଆସିଛି ନାଚିବାକୁ ଶେଷଥର, ଦେଖ
ତା ସୂକ୍ଷ୍ମ ଉଜ୍ଜ୍ୱଳ ବେଶ ମଞ୍ଚର ଆଲୁଏ
ଗତ ଅଧେ ଗ୍ରାମାଞ୍ଚଳ ରାସ୍ତା ପରି, ମତେ
କିନ୍ତୁ ଖୁବ୍ ଭଲଲାଗେ ତାର ବାଳ, ତା ବାଳରେ
ଦୂର ପର୍ବତର ଦୁଃଖ ଓ ଉତ୍କଣ୍ଠା ଥାଏ ।
ସ୍ୱପ୍ନବର୍ଣ୍ଣ ବାଳ ତାର ଏତେ ବହଳ ଯେ
ସେ ଅରଣ୍ୟେ କେତେ ମୃତ୍ୟୁ ନିରୁଦ୍ଦିଷ୍ଟ ହୁଏ ।

ତା ପାଦ କମ୍ପୁଛି, କେଉଁ ନାଚ ଚେଷ୍ଟା କରେ
ନୂଆ ମରି ବାହାରିବ ଓ କାନ୍ଦିବ ବଡ଼ପାଟି କରି
ପୃଥିବୀପୃଷ୍ଠରେ, ଏତେ ଲୁହ କଣ କେବେ
ଜାଗା ହୁଏ ଗର୍ଭବାସେ ? କିନ୍ତୁ ମୋର ନର୍ତ୍ତକୀ ଦେହରେ
ଜାଗା କାହିଁ ? ଜାଗା କାହିଁ କୌଣସି ମଞ୍ଚରେ ?

ଉଠି ଆସ ନର୍ତ୍ତକୀ ଲୋ, ଦେଖଣାହାରିଏ
ଅଧୈର୍ଯ୍ୟ ହେଲେଣି । ମୁଁ ଜାଣିଛି ମଞ୍ଚ ଉପରକୁ
ଆସି ତୁ ନାଚିବା ଲାଗି ପାଦ ବଢ଼ାଇବା
ମାତ୍ରକେ ମରିବୁ, କ୍ରୋଧ ଆଉ ଘୃଣାରେ ମରିବୁ
ଏବଂ ଫେରିଯିବୁ ତୋର ଗର୍ଭର ନାଚର
ଅନ୍ଧାରକୁ, କିନ୍ତୁ ଯଦି ନ ନାଚି ରହିବୁ

ତଥାପି ରହିବ ମୃତ୍ୟୁ ଘଣ୍ଟା ଘଣ୍ଟା ଶୂନ୍ୟ ଅପେକ୍ଷାରେ ।
କାଳକ୍ରମେ ସେ ଅପେକ୍ଷା କଲା ଦର୍ଶେ ବୃନ୍ଦାବନ ପରି,
କାଳକ୍ରମେ ପବନରେ ପତ୍ରଗନ୍ଧ, ଅନ୍ତରାଳରେ ଶେଯ,
ସଡ଼କ ବଜାର ଶୂନ୍ୟ, ଶୂନ୍ୟ ବନ, ଶୂନ୍ୟ ଘର, ଖାଲି
କାଗୁଡ଼ିଆ ଷ୍ଟେସନ୍‌ରେ ଟ୍ରେନ୍ ଚାଲିଯିବାର ଆବାଜ ।

ଦୁଇଟି ମାନବ ମୃତ୍ୟୁ, ତୋର ନାହିଁ ଭୃଷ୍ଟାସ୍ଥ ଉପାୟ ।
ଅଧୈର୍ଯ୍ୟ ଦେଖଣାହାରୀ ।
ପୁନର୍ଜନ୍ମ ଅନଶ୍ଚିତ ।
ବିଦାୟ ବିଦାୟ ।

•

## ତମେ ଗ୍ଳିଯିବା ପରେ

ତମେ ଗ୍ଳିଯିବା ପରେ
ସମସ୍ତ ହେଲିଲା ଏକ ଗ୍ରଡଅଧ ବିମାନବନ୍ଦର ।
ଘଣ୍ଟା ଭିତରକୁ ଲମ୍ବି ଯାଇଥିଲେ ମାଳବଣ୍ଟମାନ ।
ବକ୍ତବ୍ୟ ତ ପରିଷ୍କାର, ବର୍ଚ୍ଚଙ୍କ ଉପ୍ତରୁ
ଅପ୍ରମିତ ଅନ୍ଧକାର ଘୋଟିଥିବ ଚଉଦଭୁବନ ।
ନଥିବ କୌଣସି ବର୍ଣ୍ଣ ମାଳ କମ୍ବା ଦୋସର୍ ରଙ୍ଗର ।
ବକ୍ତବ୍ୟ ତ ପରିଷ୍କାର, ବର୍ଣ୍ଣବନା ଚମତ୍କନା ଏବଂ
ଆଶା ଛନା ମୋ ଗନ୍ତବ୍ୟ ସେହି ଅନ୍ଧକାର ।

ଆଖି ବୁଜି ଦେଲି, ଆଖି ପଛଆଡ଼େ ଲାଗେ
କେଉଁଠାରେ ଖିଷଣ ଯନ୍ତ୍ରଣା ।
ସତେ ଅବା ଭାଙ୍ଗିଗଲା ବ୍ୟୋମଯାନ ଓହ୍ଲାଇଲା ବେଳେ,
ଲିଭିଗଲା ଆଲୁଅ ଓ ସରଳବଣ୍ଣାସୀ
ହସ ନିରୁଦ୍ଦିଷ୍ଟ ହେଲା ଅପ୍ରସ୍ତୁତ ଭବିଷ୍ୟତ କୋଳେ ।
ସତେ ଅବା ଗୁଡ଼ିଗଲା ରଙ୍ଗ ମୋର କୋଟଶ୍ରୀ କାନ୍ଥରୁ,
ସତେ ଅବା ଗାଲିଚ୍ଛ ଓ ଶେଯ ଓଦା କେବଳ ବର୍ଷାରେ ।
ମତେ ଜଣାଗଲା ଆଜି ଏ କୋଠରୀ ମୋର ହୋଇ ନାହିଁ ।
ଏଠାରେ ମୁଁ ଆଗନ୍ତୁକ, ମୋ ସମସ୍ତ ନଷ୍ଟକରେ, ବସି
ହସଟିଏ ଉତ୍ପାଦନ କରିବାର ବିଫଳ ଚେଷ୍ଟାରେ,

ଅଥବା ବୃଦ୍ଧିଙ୍କୁ ଦେବ ଜୀବନ୍ୟାସ ମୃତଙ୍କୁ ଅଥବା
ଯୁବତୀଙ୍କୁ ଦାନେ ଗଢ଼େ ଭାଗ୍ୟକୁ ବା ଚଢେ
ଈଶ୍ୱରଙ୍କୁ ଏଠାରୁ ମୋର ଚିତ୍କାର୍ ଅଜସ୍ର ଦାଇରେ ।

ତମେ ଚାଲିଯିବା ପରେ ଆଉ କିଛି ଯାଏ ଆସେ ନାହିଁ,
ମୋ ଦୃଷ୍ଟି ଶ୍ରବଣ ଆଉ ସ୍ପର୍ଶ ଶକ୍ତି ଆଦ
ମୋ ଆପ୍ରତ୍ୟୟାଧୀନ ଅବା ଯାହାକିଛି ଘଟିଲା ତା ଯୋଗୁଁ
ଅପ୍ରସ୍ତୁତ ମନ ଦେଖେ ଅବାସ୍ତବ ରୂପ ଧାଡ଼ ଧାଡ଼ ।
ତମକୁ ତମର ଲୁହ ଓ ଗୀତକୁ ଧ୍ୱଂସ କରୁଥିବା
ସତ୍ତାର ନିର୍ମଳ ଜ୍ୟୋତି କିଏ ଯିବ ନେଇ ?

ତମେ ଦେଖାଯାଅ (ତମେ ଚାଲିଯିବା ପରେ)
ନାନାରୂପେ, କୌଣସି ରୂପର
ଅସ୍ତିତ୍ୱ ଯଦିଓ ନାହିଁ ବର୍ତ୍ତମାନେ ଅବା ଭବିଷ୍ୟତେ
ପ୍ରତିରୂପ ଏଡ଼ିଦିଏ ଚାଞ୍ଚଲ୍ୟରେ ସମୟକୁ ଯାହା
ଦିନା ବାକ୍ୟବ୍ୟୟେ ବାନ୍ଧି ହୋଇଯାଏ ଅତୀତକାଳ ବା
ବର୍ତ୍ତମାନକାଳ କିମ୍ବା ଭବିଷ୍ୟତକାଳର ଖୋପରେ ।
ଏଠାରେ କେବଳ ଅଛି ଗୋଟିଏ ସମୟ,
ସେଥିରେ ଜୀବନ ପରେ ମୃତ୍ୟୁ ନାହିଁ କିମ୍ବା ମୃତ୍ୟୁ ପରେ
ପ୍ରାୟଶ୍ଚିତ୍ତ ନାହିଁ, ସବୁ ମିଶାମିଶି ସେହି
ସମୟରେ, ଏବଂ ଯେବେ ସେ ସମୟ ସରିଯିବ କିଛି
ନ ଥିବ କେବଳ ଥିବ ଅମାପ ଅନ୍ଧାର
ପ୍ରାଣହୀନ ସମୁଦ୍ର ଓ ପ୍ରାଣହୀନ ତରଙ୍ଗ ଭିତରେ ।

## ଶିଷ୍ଟାଗ୍ନିର

୧

ଏକଦା ଗୋଟିଏ ଜନ୍ତୁ
                ପରେ ମରି ଶୋଇଥିଲା ବେଳେ
ନୀଳବର୍ଣ୍ଣ ବାଲଙ୍କର ମହାସାଗରରେ
ମୁଁ ଶୁଣିଲି ଶଙ୍ଖଙ୍କର ପ୍ରାଗୈତିହାସିକ
ହଦାସ୍ତୁକାଳୀନ ଧ୍ୱନି ଦୂରଦୂରାନ୍ତରେ,
ମୁଁ ଦେଖିଲି ହର୍‌ବଲସ୍ତୁ ଲାଲ୍‌ପଡ଼େ
ଫାଶୀଦଣ୍ଡ ପାଇଥିବା ଅଜ୍ଞାନ ହଂସରେ,
ଅଥବା ନିକଟବର୍ତ୍ତୀ ନିଆଁର ଆଲୋକେ ।
ସେଠି ଥିଲା ମୋ ଶୈଶବ ଯୌବନ ହୃଦୟ
ଓଠର ଉଷ୍ମତା ଚମ ଭ୍ରୂଲତା ଚଳର
ଛୁଇଁ ଛୁଇ ସଡ଼କରେ ଦୋଦୋପାଞ୍ଚ ହାତ
ଆଖିର ଆଗ୍ନେୟଗିରି କେତେ ଦେଶ ମହାଦେଶ କେତେ
ନିଷିଦ୍ଧ ରାତର ଶେଷେ ମୂଲ୍‌ଏମ୍ ସୁନେଲି ପ୍ରଭାତ ।

ବର୍ତ୍ତମାନ ଏ ପୃଥିବୀ ଭୁଲିଯିବ
ମୋ ଜ୍ୱଳନ୍ତ ରାତି ସବୁ ରକ୍ତସ୍ନାତ ଅନେକ ସକାଳ ।
ମୁଁ ଦେଖିଲି ପୂର୍ବଦିଗୁଁ ପଶ୍ଚିମ ଦିଗକୁ
ଲମ୍ବିଯାଏ ଏକ ହାସ୍ୟରେଖ ।

ମୁଁ ଦେଖିଲି ଫୁଲ ଫୁଟେ
ଢନେ ମରିଯାଇଥିବା ଗଛଙ୍କର ସବୁଜ ଡାଳରେ,
ପ୍ରଜାପତିମାନେ ଉଡ଼ି ବୁଲୁଥିଲେ
ସମସ୍ତର ପୁନର୍ବାର କୁଜ୍ଜ କୁଜ୍ଜ ଝରଣା କୂଳରେ ।
ଏହା କ'ଣ ମୃତ୍ୟୁ ? ବା ପୌନଃପୁନିକ ଜୀବନ
ବନକୁ ଓ ଦୁନିଆର ଦେଖୁଅଛୁ ମାଗିଆଣିଥିବା
ଆଖିରେ ? ଅବଶ୍ୟ ମୁଁ ମୃତ, ଯେଣୁ ମୋର
ରକ୍ତରେ ଉତ୍ତାପ ନାହିଁ, ପ୍ରତିଧ୍ୱନି ନାହିଁ ମୋର ଶବ୍ଦର ।

୨

ତଥାପି ମୁଁ ଖୋଜୁଅଛୁ ବଞ୍ଚିବାର ସାକ୍ଷ୍ୟ ଓ ପ୍ରମାଣ ।
କିଏ ମତେ ତାହା ଦେବ ? ମୋ ଅଙ୍ଗପ୍ରତ୍ୟଙ୍ଗ
ଦେବେ ନାହିଁ, ହାତଗୋଡ଼ ବାଷ୍ପୀୟ ଆକାରେ
ହଜିଗଲେ ପରସ୍ପରେ ନ ଚିହ୍ନିବା ତତ୍ତ୍ୱମାନଙ୍କର
ଆଦମ ଦୂରତା ମଧ୍ୟ । ଜଣାଶୁଣା ଲୋକେ ଦେବେ ନାହିଁ ।
ସେମାନେ ତ ନିଜେ ଲୁସିଯାଉଛନ୍ତି ନଶ୍ୱର ପ୍ରଖର
ସ୍ୱଅରେ ଅଜଣା ଏବଂ ଅନ୍ଧକାରଚ୍ଛନ୍ନ ମୁହାଣକୁ ।
ସମସ୍ତେ ଅସ୍ଥିର ଆମେ, ପ୍ରତି ମିନିଟ୍‌ରେ
ଗୋଟିଏ ସ୍ଥିତିରୁ ଯାଉଁ ପୃଥକ୍ ସ୍ଥିତିକୁ
ଏତେ କ୍ଷିପ୍ର ଗତିରେ ଯେ ମୁଣ୍ଡ ଘୂରିଯାଏ,
କେତେବେଳେ ସ୍ୱର୍ଗ ଦିଶେ ନର୍କ ଦିଶେ ଆଉ କେତେବେଳେ,
କେତେବେଳେ ପକ୍ଷୀଙ୍କର କାକଳିରେ ସାନ୍ତ୍ୱନା ଶୁଭେ ତ
କେବେ ମୋର ନଶ୍ୱରତା ପରିଷ୍କାର ଦିଶେ ଅସ୍ତାଚଳେ ।

୩

ମନେକର ଦିନେ ତମେ ବିଦାୟ ଦେବାକୁ
ଷ୍ଟେସନ୍‌କୁ ଗଲ କେତେ ମିନିଟ୍ ଆଗରୁ

ଟ୍ରେନ୍ ଚାଲିଯାଇଥିଲା ବକ୍ତବ୍ୟ ତମର
ନିଜ ପାଖେ ରହିଗଲା, ଜୀବନଟାଯାକ
ଆଉ ଦେଖା ହେବ ନାହିଁ; ପୁଣି ମନେକର
ତା' ଶରଶଯ୍ୟାରେ ବସି ତମେ ଭାବୁଥିଲ
କପରି କହିବ ତାକୁ ତମେ ତାକୁ କେତେ ଭଲପାଅ,
ହଠାତ୍ ତା ପ୍ରାଣବାୟୁ ଉଡ଼ିଗଲା; କିମ୍ବା ମନେକର

ତମେ ହଠାତ୍ ଜାଣିଲ ଯେ ତମ ବ୍ୟୋମଯାନ
ଧ୍ୱଂସ ହୋଇଯିବ ମାତ୍ର କେତେ ସେକେଣ୍ଡ୍‌ରେ
ତା ଭିତରେ ଖଞ୍ଜା ବୋମା ଫୁଟିଯିବା ଯୋଗୁଁ;
ମନେକର ଏହିପରି ନାନାଦି ଅବସ୍ଥା,
ତାପରେ ଜାଣିବ ତମେ ଜୀବନଟା ପ୍ରକୃତପକ୍ଷରେ
ସାଧୁସନ୍ଥମାନେ ଯାହା କହିଥିଲେ, ସେତେ ସୁଖ ଦିଏ
ତାଠାରୁ ଅଧିକ ଦିଏ ଅସନ୍ତୋଷ, କିନ୍ତୁ ଜାଣିବାର
ନିର୍ଯ୍ୟାତନା ଓ ତିକ୍ତତା ତମର ଓ କେବଳ ତମର ।

୪

କାହାଣୀ ସରିବ ନାହିଁ, ଶବ୍ଦ ଅନ୍ଧ ଭିକାରୀଙ୍କ ପରି
ବୁଲୁଥିବେ ଅନନ୍ତର ଇତିହାସଯାକ,
ବା ମୂକ ଲୋକଙ୍କ ପରି ବର୍ତ୍ତମାନ ଶୂନ୍ୟତା ଭିତରେ
ରହିଥିବେ । ଏକଦା ଶବ୍ଦଙ୍କ
ମାଲିକ ମୁଁ ଥିଲି, ଶବ୍ଦ ଇଚ୍ଛାମତେ
ଖଞ୍ଜି ମୁଁ ତିଆରୁଥିଲି ଅନେକ ସମ୍ପର୍କ ।

ଆଜି କିନ୍ତୁ ଯଥେଷ୍ଟ ହୁଅନ୍ତା
ଛଅ ସାତଗୋଟି ଶବ୍ଦ, ଏପରିକି ଦୁଇ ତିନିଟିରେ
କାମ ଚଳିଯାନ୍ତା, କିନ୍ତୁ ଏ ତଥ୍ୟ ନ ଥିବା
ଗତ ଗିଳିଦେଲା ସବୁ ଶବ୍ଦ ମୋର, ପବନ ସହିତ

ସବୁ ଦେଇ ଭିକ୍ଷାପାତ୍ର, ଅନ୍ଧାର ଭିତରେ
ମୁଁ ଦେଖୁଛି ଆସେ ମୋର ଅନ୍ତିମ ମୁହୂର୍ତ୍ତ
ଭେଟେଇଲେ— ଦୁର୍ଘଟଣା, ଆତ୍ମହତ୍ୟା,
ରୋଗାକ୍ରାନ୍ତ ବାର୍ଦ୍ଧକ୍ୟ ରୂପରେ,
ଯେତେବେଳେ ଥପ୍ଥପ୍ ରକ୍ତ ବୋହୁଥିବା
ଚଲ୍ଆର୍ ଧର ଆସେ ଯେବେ
ଏକୁଟିଆ ଚାହ୍ ଖେଳେ ପାହାଡ଼ ଖୋଲରେ ।
ମୁଁ ତାକୁ ଅପେକ୍ଷା କରି ରହିଥିବାବେଳେ
ଧୂଁ ଧୂଁ ମଣିଷର ଲଜ୍ଜା ହୋଇଯାଏ,
ବାରଣ୍ଡାରେ ବସିକରି ସିଗ୍ରେଟ୍ ପିଏଁ ବା
ଚୁମା ଦିଏ ସ୍ତ୍ରୀଙ୍କ କପାଳେ,
ମୁଣ୍ଡ ଟେକି ପାରେ ନାହିଁ କହିପାରେ ନାହିଁ
ସତେ କଥା ବା ହାତ ବଢ଼ାଇ
ସ୍ତବ୍ଧ ମହାଦେଶଙ୍କର ଉପାନ୍ତରେ ଥିବା
ପିଲାଙ୍କୁ ମୁଁ ଛୁଇଁପାରେ ନାହିଁ ।

୫

ମୋର ଆଉ ଭୟ ନାହିଁ
ଚଲୁଅର୍ ଧସ ଗଳକୁ,
ସହସ୍ର ସହସ୍ର ଥର ମୁଁ ମରିଛି ଏବଂ
ସହସ୍ର ସହସ୍ର ସୃଷ୍ଟି ଜୀବନକୁ
ଫେରିଆସି ଅଇଁଠିଛି ଫୁଲଙ୍କ ପାଖୁଡ଼ା,
ଡଳିଛି ପ୍ରଜାପତିମାନଙ୍କ ପକ୍ଷରେ
କାରଣ ଶାସ୍ତ୍ରୋକ୍ତମତେ ଈଶ୍ୱର କହନ୍ତି
ଏତଦ୍ଦ୍ୱାରା ପ୍ରମାଣ ଯେ ପ୍ରକୃତ ପକ୍ଷରେ
ମୃତ୍ୟୁ ନାହିଁ, ମୃତ୍ୟୁ ଅଛି ଖାଲି ହୃଦୟର
ଅନ୍ଧାରରେ ଓ ଆଶାର ଅସମର୍ଥତାରେ ।

ଆଜି କାଲି ପ୍ରୟୋଜନ ନାହିଁ
ପ୍ରମାଣ କରିବା ଲାଗି ମୁଁ ବଞ୍ଚିଛି ବୋଲି ।
ଆଜି ଯଦି ଫୁଲଫୁଟେ ଗଛଙ୍କୁ ଜଣାଅ
କୃତଜ୍ଞତା, ଯଦି କଏ
କହେ ଯେ ଶୁଣିଛି ବୋଲି ଚୂପ୍‌ଚୂପ କାନ୍ଦଣା ତମର
ଡାକ୍ତରଙ୍କୁ ଡାକ, କିମ୍ବା ଆକାଶକୁ ଖୋଜ ।
ଆକାଶର ଶୂନ୍ୟତା ହିଁ ତୁମକୁ ଓ ତାକୁ
ଈଶ୍ୱରଙ୍କ ପ୍ରତ୍ୟୁତ୍ତର, କାହାର ଏଡ଼କ
ଆସ୍ପର୍ଦ୍ଧା ଯେ ଲୁହଭାଳ ଶ୍ୟାମଳ କରିବ
ଅପ୍ରଚ୍ଛନ୍ନ ସମସ୍ତର ଦଗ୍‌ଧ ଭୂଖଣ୍ଡକୁ ?

## ଉଜ୍ଜ୍ୱଳ ଭବିଷ୍ୟତ

୧

ସମସ୍ତ କୃପଣ କେତେ ! ମନା କରିଦେଲି
ଆଜି ଏକ ଚନ୍ଦ୍ରପକ୍ଷ ରାତି ମୋ ଦେହକୁ ।
କୋଇଲାର ଚିଣ୍ଟି ଚପି ଦେଲି, ତା ମତରେ
ଗୋଟିଏ ଗୀତ ହିଁ ଖୁବ୍ । ଉପର ଓଳକୁ
ଲୁହଁ ଲୁହଁ ରଖିଦେଲି ଦୃଷ୍ଟି ବା ସ୍ପର୍ଶର
ଅପହଞ୍ଚ ଅନ୍ଧାରର ସିନ୍ଦୁକ ଭିତରେ ।
ସମସ୍ତ ଅନେକ ଥର

ନିଶାର୍ଦ୍ଧରେ ଝଡ଼ ହୋଇ ଆସେ
ଖୋଲି ରହିଯାଇଥିବା ଝର୍କା ବାଟେ
ବର୍ଷାପାଣି ସରସର ଉଦ୍‌ଭ୍ରାନ୍ତ ବତାସେ,
ପତ୍ନୀଙ୍କର ଫଟୋଗ୍ରାଫ୍
ଫିଙ୍ଗିଦେଇ ଚୂର୍‌ମାର୍ କରେ,
ଛୁଗୁଲିଏ ଜଙ୍ଗଲର
ଶୂନ୍ୟଗର୍ଭ ଉଚ୍ଚ କାନ୍ଦଣାରେ ।
ଯନ୍ତ୍ରଣା ଯଥେଷ୍ଟ ହେଲା
ଭାବୁଥିବା ଲୋକକୁ ସମସ୍ତ
କେତେବେଳେ କୃପଣ ତ
କେତେବେଳେ ସ୍ୱଖିଷିକାମସ୍ତୁ ।

ତମେ ଶୁଣିପାରିବାପରେ ନକ୍ଷତ୍ରମାନଙ୍କରେ
ମୁଁ ରହିଲି ଠିଆ ହୋଇ । ମେଘ ଘୋଟି ଆସେ
ଆକାଶରେ । ବହୁବର୍ଷ ତଳେ
ଛାଡ଼ିଥିବା ଘରକୁ ମୁଁ ଚହିଁର ପଡ଼ିଁର
ଫେରିବାକୁ ଅସମର୍ଥ । ସବୁ କିଛି ବିରଶ
ଏକା ପର । ଉଡ଼ି ଯାଉଥିବା
ଚଢ଼େଇ ଯାଆନ୍ତି ମିଶି ଗୋଟିଏ ଦୁଃଖରେ,
ସେ ଦୁଃଖ ଗୋଟିଏ ଲମ୍ବା ସରୁ ଛୁଇ ପରି
ମଣିଷମାନଙ୍କୁ ଯୋଡ଼େ ତାଙ୍କ ଅପେକ୍ଷାରେ
ଜଳୁଥିବା ନିଆଁ ସଙ୍ଗେ । ଚତୁର୍ଦ୍ଦିଗ ଚାର
ଲହଡ଼ି ଭାଙ୍ଗିବା ଶବ୍ଦ ଏବଂ ସଂସ୍କୃତରେ
ପ୍ରେତକୃତ୍ୟ ମନ୍ତ୍ରଙ୍କର ଅମଙ୍ଗଳ ସ୍ୱର ।

୨

ମୁଁ କଣ ପିନ୍ଧିବି ମୋର ଶେଷ ଦିନ ? ଯଦି ହାଫ୍‌ପ୍ୟାଣ୍ଟ୍
ପିନ୍ଧିବି ତା ହେଲେ ବୋଧେ ଦେଖାଯିବି ଖେଳୁଆଡ଼ ପରି
ଲୋକେ ଦେଖିବେ ଯେ ଶେଷ ମୁହୂର୍ତ୍ତଯାଏ ମୁଁ
ବେପରୁଆ ଥିଲି ମନ ଫୂର୍ତ୍ତି ଥିଲା ଉସ୍ଥ
ଶୋଚନା ନ ଥିଲା, ଖେଳ ଭିତରେ ସତେ ବା
ଜୀବନଟା ଥିଲା ମୋର ବିଶ୍ରାମ ସମୟ ।

କିନ୍ତୁ ଯଦି ଧୋତି ପିନ୍ଧେ ତା ହେଲେ ହୁଏତ
ଲୋକେ ଭାବିବେ ଯେ ଶେଷ ନିଃଶ୍ୱାସ ଯାଏଁ ମୁଁ
ଖୁସି ମିଜାଜ୍‌ରେ ଥିଲି, ମୃତ୍ୟୁ ଥିଲା ଏକ ରବିବାର
ବାହାରେ ସିନେମା ଗୀତ ଓ ଘର ଭିତରେ
ଚା ଓ ସିଗ୍ରେଟ୍ ଏବଂ ଗପସପ ଦୁନିଆଁ ଯାକର ।

ମୁଁ ମୋ ଶେଷଦିନ ଯଦି ସୁଟ୍ ପିନ୍ଧେ ତେବେ
ଦୁନିଆଁ ଭାବିବ ମତେ ନିଧଡ଼କ ସୌଖୀନ୍ ସାହେବ,

ଅନ୍ୟ କେତେ କାମ ପରି ମୃତ୍ୟୁ ଏକ କାମ, ସେଥିପାଇଁ
ପଛଘୁଞ୍ଚା ନାହିଁ କିମ୍ବା ଅଯଥା ବ୍ୟସ୍ତତା
ନାହିଁ ବା ଅପରପକ୍ଷ ବିମର୍ଷତା ନାହିଁ ।

ମୋର ବେଶଭୂଷା ଯାହା ହେଉପଛେ
ଅନ୍ୟ ଏକ ମୃତ୍ୟୁ ହେବ ମୋ ମରିବା ଦିନ ।
ଫୁଙ୍ଗୁଳା ଦେହରେ କଙ୍କି ଧରିବାରେ କୋଳ ଡୋଳିବାରେ
ସକାଳ ଗୋଟାକ କାଟୁଥିବା ବାଳକର
ସେ ଦିନ ଦେହାନ୍ତ ହେବ । ମୋର ଆଜୀବନ
ସେ ନ ମରି ରହିଥିଲା । ଚୁପ୍‌ଚୁପ୍ ସେ ଅଧରାତିରେ
ଲୁଚି ବୁଲିଯାଉଥିଲା ଖରାକୁ, ଢାହକୁ,
ନିଜ ନିର୍ଦ୍ଦୋଷତାକୁ ଓ ପହଗହଳରେ
ଲୁଚିଥିବା ପକ୍ଷୀଙ୍କର କାକଳି ପାଖକୁ ।

ସେ ମରିବ ସେହିପରି—ଫୁଙ୍ଗୁଳା ଦେହରେ ।
ଫେରିବାର ବାଟବନ୍ଦ ସମସ୍ତାନ୍ତରର
ମଶାଣିଠୁଁ ମେଘଯାଏଁ ଲମ୍ବିଥିବା ପରିବର୍ତ୍ତନରେ ।

## ଦୂରଦୃଷ୍ଟି

ଆଜ ରାତିରେ ଆକାଶ ମୋଡ଼ ହୋଇଯାଏ
ପୋଡ଼ିବା କାଗଜ ପରି, ଗଛ ସବୁ କଳା
ପୋଡ଼ା ହଆସିଲ କାଠିପରି ଓ ଆଜ ରାତିରେ
ପ୍ରତ୍ୟେକ ମିନଟ୍ ଏକ ଛୁରିକାଘାତ ମୋ
ଅରକ୍ଷିତ ଭବିଷ୍ୟତ ଧୂସର ଦେହରେ ।
ରକ୍ତ ବୋହିଯାଏ ଘରଯାକ ଓ ଉଚ୍ଛୁଳେ
ଝର୍କା ଓ କବାଟ ଦେଇ, ଯେବେ ରକ୍ତଯାକ
ଦେହରୁ ନିଗିଡ଼ି ଯିବ ମତେ ମିଳିବ ମୋ
ଶେଷ ପରିଣତି—ଜଙ୍ଗଲର ନିଆଁ,
ଚନ୍ଦ୍ର ରାଜ୍ୟକୁ ମୋ ସଂକ୍ଷିପ୍ତ ଏବଂ ସାହସିକ
ଯାତ୍ରା ପ୍ରତି ପରିହାସ ପୋଡ଼ୁଥିବା କାଠ-
ମାନଙ୍କ ଫୁଟିବା ଶବ୍ଦେ ।

ଆଜ ରାତିରେ ମୁଁ

ତମେ କଳା ପଡ଼ିଆସୁଥିବା ପୃଥିବୀର
ଉପାନ୍ତରେ ଠିଆ ହୋଇ ତାକୁ ଖୋଜୁଅଛି
ଯାହାର ନିଃଶ୍ୱାସେ ଦଗ୍ଧ ହୋଇ ମୋ ଶରୀର ।
ମୋ ମନରେ ଅଭିଯୋଗ ନାହିଁ ବରଂ ଅଛି
କେତେ ସ୍ନେହ ଓ କ୍ଷମା ପ୍ରାର୍ଥନା,

ବହୁ ପୂର୍ବଜନ୍ମକାଳୁଁ ଦୁଇଟି କୃତାର୍ଥ
ଆଖିରେ ବିଳସୁ ହେବା ନିମିତ୍ତ କାମନା ।

ତା ଅସିଦ୍ଧ ଦେହ ଏବଂ
ମୋ ଅସିଦ୍ଧ ଦେହ
ମମତାର ଅନ୍ଧାରରେ କଣ୍ଟୁଦନ ଯାଇ
ହଠାତ୍ ଅଲଗା ହେଲେ; ଯଦ୍ଧବା ସ୍ୱର୍ଗୀୟ
ଆଲୋକରେ ଉଦ୍‌ଭାସିତ ମୃତ୍ୟୁହୀନ ଭବିଷ୍ୟତ କାଳ
ଏ ଏକ ରକମ ଭଲ—ଜଙ୍ଗଲୀ ନିଆଁରେ
ଜାଳିଦେବା ଜୀବାତ୍ମାର ଇହକାଳ ଏବଂ ପରକାଳ ।
ଦେହ ଜଳିଯାଏ, ତାର ପାଉଁଶ ବିକ୍ଷିପ୍ତ
ପୃଥିବୀର କେଉଁଆଡ଼େ ସାତ ସମୁଦ୍ରରେ,
କେଉଁ ଭଗବାନ କିମ୍ବା ପ୍ରେତାତ୍ମାର ସାଧ୍ୟ ନାହିଁ ସବୁ
ପାଉଁଶ ଏକଜ କରି ପୁଣି ଆଉ ଥରେ
ଗଢ଼ିବାକୁ ନିଃଶ୍ୱାସରେ ଚଞ୍ଚଳ ଶରୀର
ଯାହାର ମନରେ ଥିବ ସ୍ମୃତି ଓ ମୁହଁରେ
କାନ୍ଦିବାର ଆର୍ଦ୍ର ହସ୍ତାକ୍ଷର ।

•

## ଛୁଟିଲେ ଘଣ୍ଟ

୧

ସେ ଶବ୍ଦର, ଯାହା ଶୁଭିଲା ନି
ମୃତ୍ୟୁଦଣ୍ଡ ମିଳୁ ତାଙ୍କୁ ଦାବୀ କରୁଥିବା
ଜନତାର ଉତ୍କ୍ଷିପ୍ତ ଚିତ୍କାରେ,

ସେ ସ୍ପନ୍ଦର, ଯାହା ଅପ୍ରକଟ
ରହିଗଲା ଲୋକାଙ୍କର ପ୍ରତି ଖାତିର୍‌ରେ

ମୁଁ ତାହାର କାର୍ତ୍ତିସ୍ତମ୍ଭ, ମୋର ପାଦଦେଶେ
ଚାଲୁଆର୍ ରଣଝଣ୍ କରୁଅଛି
କେଉଁ ଶୂନ୍ୟକାୟ,
ଶତାୟୁ ଦେହର ମୁହେଁ ବେଗା ବେଗା ହସ
ମୋ ଉଦ୍ଦେଶ୍ୟେ କହୁଅଛି
ଝଦାୟୁ ବଦାୟୁ ।

୨

କାନେ କାନେ କହିଥିଲ
ଦେବ ବୋଲି ବାଲ୍‌ଟିଏ ରକ୍ତ ଆଉ
ଗଦାଏ କଙ୍କାଳ ।

ଆକାଶ ଗୋଟାକଯାକ
ବାଳକଙ୍କ ଶବ ଏବଂ
ହୃଷ୍ଟପୁଷ୍ଟ ଶାଗୁଣାଙ୍କ ଦଳ,
ଶୁଦ୍ଧନୀଳ ଶୂନ୍ୟତା ବା
ସୁନାରଙ୍ଗ ସକାଳର ଖବର
କିଛି ନାହିଁ, ମଲା ଚଢ଼େଇଙ୍କ
ଦେହ ପରି ମୁଲଏମ୍ ମୋ କୋଳକୁ ତମେ
ଟାଣି ହୋଇ ଆସୁଅଛ
ମୋ ପ୍ରଥମ ପ୍ରତିଶ୍ରୁତି ହାର ।

୩

ଉଡ଼ୁଥିବା ପକ୍ଷୀ ହେଲ
ହଠାତ୍ ନିଶ୍ଚଳ ।
ସ୍ତବ୍ଧ ହେଲା ଢୋଲ ଶବ୍ଦ, ମାଂସର ଭିତରେ
ଲୁଗ୍ଣ ହେଲା ହଠାତ୍ ଅଚଳ ।
ନଈପାଣି ସ୍ଥିର ହେଲା, ସମୁଦ୍ରର ଢେଉ
ନ ଭାଙ୍ଗି ରହିଲା ।
ମଧ୍ୟାହ୍ନ ସମୟ ଏକ ଅମର ରାକ୍ଷସ
ଏକମାତ୍ର ଗତିଶୀଳ ତମ ଫଟୋଗ୍ରାଫ୍
ଭିତରୁ ବାହାରୁଥିବା ଗରମ ନିଃଶ୍ୱାସ ।

ତାହା ଦିନ ତାହା ରାତି
ଚଟାଣ ଓ ଛାତ
ତାହା ମୋ ଝରଣା ଜହ୍ନ ଫୁଲତୋଡ଼ା ନଆଁ
ନଦ ହ୍ରଦ ଅନ୍ଧାର ପର୍ବତ ।

ସଜାଇ ରଖନ୍ତି ତାକୁ
ବସ୍ତୁ ବସ୍ତୁ ଗୀତଙ୍କର ପାଲିଙ୍କି ଭିତରେ

ଆଜି ଯଦି ସବୁ ବନ୍ଦ ନ ହୋଇଥାଆନ୍ତା
ତମେ ମରିଯିବା ସମ୍ବାଦରେ ।

୪

ତମଙ୍କୁ ଅନେକ କଥା
କହିବାର ଥିଲା,
ଅନେକ ଜରୁରୀ କଥା, କାଲିଠୁଁ ଜହ୍ନର,
ଚେହେରା ଅସ୍ପଷ୍ଟ ହେବ, କାଲିଠୁଁ ସମ୍ପର୍କ
କଟିଯିବ ମୋର ଏବଂ ତମମାନଙ୍କର ।

ଅନ୍ଧାରରେ କାହା ଛୁରୀ
ତଣ୍ଟି କାଟିଦେବ,
ଶବ ସବୁ ଡେଇଁ ଡେଇଁ ହଂସ ଛୁଆ ପରି
ଚାଲିଯିବେ ଶାଳ ଜଙ୍ଗଲକୁ,
ମୁଁ ଚାହିଁଛି ଚାରିଆଡେ, କେହି ଦେଖି ନାହିଁ
କେତେ ଶବ ଗଲେ ଏବଂ ଗଲେ କେଉଁଠାକୁ ।

## ଖରାପ ସମୟର ଭଲ ସମୟ

୧

ବେଳେ ବେଳେ ଖୁବ୍ ଡରମାଡ଼େ,
ତମକୁ ଉଠାଇବାକୁ ଗଲାବେଳେ ହାତ ଥରେ, ସ୍ୱର
ପଡ଼ଯାଏ ଯେତେବେଳେ ତମ ନାଆଁ ଧରି
ଡାକିବାକୁ ଇଚ୍ଛା ହୁଏ ମୋର ।

ମୁଁ ପଳାଏଁ ଲୁଚି ଲୁଚି, ନିଜକୁ ଦେଖେଁ ମୁଁ
ମୋ ଚାରିପାଖର ଅସୁନ୍ଦର ଆଲୋକେ ଯିବାର ।
ମୋ ପ୍ୟାଣ୍ଟର ପଛଆଡ଼ ଚିରି, ମୋ ଦେହରେ
କମିଜ୍ ନାହିଁ । ପ୍ରେତାତ୍ମା ମୋ ବଡ଼ ଭଉଣୀର !
କମିଜ୍ ଖଣ୍ଡିଏ ଦେ, ଦେ ମତେ ଗୋଟିଏ ବିଛଣା ।
ଏକା ମାଆ ପେଟରୁ ଆମେ ଜନ୍ମ, ତତେ କଣ
ବାଧୁନାହିଁ ମୁଁ ନ ଶୋଇ ପାରିବା ଯନ୍ତ୍ରଣା ?

କେତେ ଦାଆଁ ଆସୁଛନ୍ତି
ମୁଁ ନ ଥିଲା ବେଳେ ତମ ପାଖକୁ !
କେତେ ଦେଖି ଚୁମା ଦେଇ ତମ କପାଳରେ
ପୋଛି ନେଉଛନ୍ତି ପୀଡ଼ା ଅଙ୍ଗପ୍ରତ୍ୟଙ୍ଗରୁ !

ଚନ୍ଦ୍ରଲୋକେ ଚକ୍ ଚକ୍ ନଈର ପାଣିରେ
ମୁଁ ଦେଖୁଛି ସେମାନଙ୍କ ଛାଇମାନେ ଯାଆନ୍ତି ଆସନ୍ତି ।
ନିକଟକୁ ଯାଇ ତାଙ୍କୁ ଦେଖିବାକୁ ଚେଷ୍ଟା କଲାବେଳେ
ଆଖି ମୋର ଖଣ୍ଡଖଣ୍ଡ ହୋଇ ଫାଟିଯାଏ
ସେ ନଈର ଆଲୋକରେ ସହସ୍ର ସୂର୍ଯ୍ୟଙ୍କ
ପ୍ରତିଧ୍ୱନି ଯାହା ଖସୁଥାଏ ।

୨

ତମେ ଏକ ଜ୍ୟୋତ୍ସ୍ନାମାସ,
ହସ୍ତ୍ୟାକାଶ ନିର୍ଦ୍ଦୋଷ ବାସର,
ତମେ ଏକ ହ୍ରଦମଧ୍ୟେ ଲୁକ୍କାୟିତ ବିଷ
କଳା ଚକ୍‌ଚକ୍ କୁଣ୍ଡଳାକୃତିର
ହଂସାର, ତମେ ସ୍ତବ୍ଧ କଲ
ସମୁଦ୍ରର ଗର୍ଜ୍ଜନ ଓ କୋଇଲିର ଗୀତ ।
ଏହା କେଉଁ ନୀରବତା, ଯାହାକୁ ମୁଁ ଛାଡ଼ି ଆସିଥିଲି
ମୋର ଜନ୍ମ ମୁହୂର୍ତ୍ତରେ, ଅଥବା ଯାହା ମୋ
ବିଳମ୍ବରେ ନୁହେଁ ବିଚଳିତ ?

ଦୁଇ ନୀରବତା ମଧ୍ୟେ
କେତେ କୋଳାହଳ ! ଅତି ଉଚ୍ଚସ୍ୱରରେ ଶୋକ !
ମୁଁ ହେଲି ସେ କୋଳାହଳ ଅଂଶ ଓ ହସିଲି
ସେ ଶୋକର ଅଂଶ ହେବାଯାଏଁ,
ମୁଁ ଦେଖିଲି ସବୁ କିଛି ମୋ ଲୁହର ଭିତରୁ, ଚନ୍ଦ୍ରକୁ
ହଳଦିଆ ରଙ୍ଗପରି ଦିଗନ୍ତର ଏକ
ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଲମ୍ବିଥାଏ ।

ତମେ ହିଁ ଉଦ୍ଧାର କଲ
ସେ ମୁହୂର୍ତ୍ତେ ମୋହର ପୌରୁଷ,

ତମର ଦେହରେ ଥିଲ ସବୁ ରତ୍ନ, ତମର ଜଂଘରେ
ଲୋକଙ୍କ ସମସ୍ତର କଷ୍ଟ,
ମୁଁ ମୋ ହାତ ବଢ଼ାଇଲି ଧରିବାକୁ
ଜୀବନ ଧରିଲି ।
ଖୁବ୍ ଖୁସିହେଲି ଏବଂ
ଗୀତ ବି ଗାଇଲି ।
କୋଇଲି ତୁ ଶୁଣ୍ ଏବଂ
ଶୁଣ ବେଙ୍ଗମାନେ,
ମୁଁ ଏକ ସମ୍ରାଟ୍ ଥିଲି କାଲି ସଞ୍ଜରେ ମୋ
ମୁକୁଟରେ ଏକ ଅନାବିଳ
ମନର ଭୁକୁଡ଼ା ସବୁ ମାଣିକ୍ୟଙ୍କ ପରି
ଦାଉ ଦାଉ ଜଳୁଥିଲେ ମୋର
ଆତ୍ମା ମରିଯିବା ଆଗୁଁ,
ହେବା ଆଗୁଁ ଆଜିର ସକାଳ ।

# ଅନାୟାସେ ନିଦିଆ କବିତା

୧

## କିଏ ସେ ପ୍ରେମିକ ଚୋର

କିଏ ସେ ପ୍ରେମିକ ଚୋର ? ନଈ ବୋହିଯାଏ,
ପ୍ରତ୍ୟେକ ଗଛରେ ଫୁଲ, ପ୍ରଜାପତି ଝଲ ମାରନ୍ତି
ରେଳଗାଡ଼ି ଅପେକ୍ଷାରେ ରହିଥିବା ଯାତ୍ରୀଙ୍କ ପରି ଓ
ଆକାଶ ଗୋଟାକ ଯାକ ଚୋର ପ୍ରେମିକର
ସ୍ମୃତିମିଶା ଖବ ରହିଥାଏ ।
ଯେଉଁଆଡ଼େ ଅନାଇଲେ ଖବ ଦିଶେ, ସେ ବି ଦେଖାଯାଏ,
ତାର କଥା ଶୁଭେ ତାର କାମ ମନେ ପଡ଼େ ।
ସେ ସବୁ ସଙ୍ଗୀତମୟ ବରଷ ଗୋଟିଏ
ନାଟକର ଯେଉଁଥିରେ ଅକ୍ଲାନ୍ତ ଦାନବ
ଉଦାସୀନ ଜନତାର ଗହଳ ଭିତରେ
ବୋହିନଏ ଏକ ପରେ ଅନ୍ୟ ଏକ ଶବ ।

୨

## ମୃତ୍ୟୁ କଣ

ମୃତ୍ୟୁ କଣ ? ହଠାତ୍ ଅଚଳ ଗଡ଼ି ଯାଉଥିବା ଚକ ।
ମୃତ୍ୟୁରେ ଆଲୋକ ନାହିଁ, ବର୍ଣ୍ଣତା ନାହିଁ କି
ଶବ୍ଦତା ବି ନାହିଁ, ଶୁଭ କି ଅଶୁଭ

କୌଣସି ସଙ୍କେତ ନାହିଁ, ବରଂ ଦୃଷ୍ଟିଶକ୍ତି
ଅଛି କି ନାହିଁ ତାହା ସନ୍ଦେହଜନକ ।
ମୃତ୍ୟୁ ଏକ ତୋଫାନ ସେ ତୋଫାନର ଆଦିଅନ୍ତ ନାହିଁ ।
ବଡ଼ ବଡ଼ କଳା ଲହଡ଼ିରେ
ବୁଡ଼ିଯାଏ ଖୁବ୍ ସ୍ଲେଟ କଳା ଆତ୍ମାଟିଏ ।
ତାକୁ ଧରି ରଖିବାକୁ ଦେହ ନାହିଁ, ଗଳିଯାଏ
ସବୁ ଜ୍ଞାତିକୁଟୁମ୍ବଙ୍କ ପରିତ୍ୟକ୍ତ ନିଆଁ ଯେଉଁଥିରେ
କେତେ ଫୁଲ କେତେ ମୃଦୁହସ
କେତେ ଚନ୍ଦ୍ରପକ୍ଷ ରାତି କେତେ ଦୀର୍ଘଶ୍ୱାସ ।

ବର୍ତ୍ତମାନ ଇଚ୍ଛା ହୁଏ ବୁଲିବାକୁ ଆବର୍ଜନାମୟ
ରାସ୍ତାରେ ଓ ରାସ୍ତାକୋଣେ ବସିବାକୁ ପଡ଼ିବା, ନଈରେ
ଲୁଗା କାଚିବାକୁ ଏବଂ ଖରାରେ ଉଜ୍ଜ୍ୱଳ
ଆକାଶକୁ ଦେଖିବାକୁ, ବୁଲିବାକୁ ବିଲରେ ଯେଉଁଠି
ଦୂବଘାସ ଉକୁଣିମାରେ ମାଟି ଢେଲାମାନଙ୍କ ସନ୍ଧିରେ ।
ବର୍ତ୍ତମାନ ଇଚ୍ଛାହୁଏ ନିଃଶ୍ୱାସରେ ନେବି
ସ୍ଲେଟ ଧଳା ହ୍ରଦପରି ଚକ୍‌ଚକ୍ ମଣିଷମାନଙ୍କ
ଉଲ୍ଲାସ ହତାଶା ହସ ସୁଖ ଏବଂ ଦୁଃଖ ।

ବର୍ତ୍ତମାନ କିନ୍ତୁ ମୋର ସ୍ୱପ୍ନ ସବୁ ଅଫଳନ୍ତ ଏବଂ ଅର୍ଥହୀନ ।
ବର୍ତ୍ତମାନ ସବୁ କିଛି ନିଜ ନିଜ ଆକାରକୁ ଗୁଡ଼ି
ହୋଇଯିବା ଆତଙ୍କରେ ଆତଙ୍କିତ ମୁଁ, ମୋର ରାତି
ସହଜେ ଅନ୍ଧାର କିନ୍ତୁ ଅନ୍ଧାର ବି ମୋର ବିପ୍ରହର ।
ମୋର କଳା ଆକାଶରେ ଡାକୁଛି ଜାଗାରେ
ଧାଡ଼ି ଧାଡ଼ି କୃଷ୍ଣବର୍ଣ୍ଣ ପକ୍ଷୀଙ୍କ ମୂର୍ଚ୍ଛାର ।

୩

## କୌଣସି ପ୍ରାର୍ଥନା ମୋର ମନେ ନାହିଁ

କୌଣସି ପ୍ରାର୍ଥନା ମୋର ମନେ ନାହିଁ । ପ୍ରାର୍ଥନା ସମସ୍ତ

ବଞ୍ଚଗଲା ଅଲୌକିକ ଘଟଣାର ଅପେକ୍ଷାରେ । ଯେବେ
ମୁଁ ଦେଖିଲି ହଳଦିଆ କନିଅର ଫୁଲ ପାଖୁଡ଼ାରେ
ଟୋପା ଟୋପା କାକର ମୁଁ ଭାବିଲି ଯେ ସେ ଆଗତପ୍ରାପ୍ତ ।
ପଥଙ୍କ ସଙ୍ଗୀତ ମିଶିଗଲା ସ୍ଥିର ଜଳ
ଯେ ମାଛ ଖୋଜିବାବେଳେ ବାହାରିବ ହଠାତ୍ ଓ ତାକୁ
ଆଶ୍ଚର୍ଯ୍ୟ କରିବ ତାର ଗୁଣଙ୍କଠୁଁ ବେଶୀ ଗୁଣଙ୍କଠାର ।
ମୁଁ ଭାବିଲି ଡେରି ନାହିଁ ଯେତେବେଳେ ନଈରେ ଆସିଲା
ଜୁଆର ଓ ନଦୀଗିଲା ଖାଲଡିପ କୂଳର କାଦୁଅ,
ଯେତେବେଳେ ପବନରେ ଶୁଣାଗଲା ବହୁତ ରହସ୍ୟ
ରହିଥିବା ଫୁସ୍‌ଫାସ୍ କଥାବାର୍ତ୍ତା । ମୁଁ ଗୁହାଁଲି ସୂର୍ଯ୍ୟଙ୍କୁ, ଚନ୍ଦ୍ରଙ୍କୁ,
ସୂର୍ଯ୍ୟ ଚନ୍ଦ୍ର ଯେପରିକି ଗୋଟିଏ ଜିନିଷ ।

ଯେତେବେଳେ ଖସିଗଲା ଜୁଆର ଓ କୂଳରେ ଦିଶିଲା
ନୂଆ କାଦୁଅ ମୁଁ ହେଲି ଶୋକଜର୍ଜ୍ଜରିତ ।
ଏକେ ତ ଘଟିଲା ନାହିଁ ଅଲୌକିକ ଘଟଣା, ତାପରେ
ବାଳ ଧଳା ହେଲା ଏବଂ ଦୃଷ୍ଟି କ୍ଷୀଣ ହେଲା,
ଢିଲା ଚମଡ଼ାରେ ମୋର ଦେହ ଆଚ୍ଛାଦିତ ।
ମୁଁ ଅପେକ୍ଷା କରିଥିବା ବଗିଚା ଭିତରେ
ହଠାତ୍ ବସିଲେ ଦଳେ ଶାଗୁଣା, ତାଙ୍କର
ନିରୁଦ୍‌ବିଗ୍ନ ଭୟାନକ ଉପସ୍ଥିତିରେ ମୁଁ
ଗୋଟାପଣେ ଥରିଲି ଓ ଚେଷ୍ଟାକଲି ପୂର୍ତ୍ତି କରିଦେବି
ମୋ ଶୂନ୍ୟ ମନରେ ଭଲ ପକ୍ଷୀଙ୍କ ଆକାର ।
କୋଇଲିକୁ ଭାବିଲି ମୁଁ ଶୁଆକୁ ଭାବିଲି,
ଭଦଭଦଳିଆ ପାରି ହଳଦୀବସନ୍ତ,
ସବୁ ବୃଥା—ମୋ ସମସ୍ତ ସରିଯାଇଥିଲା ।
ମଲା ମୂଷା ପରି ଗନ୍ଧ କରୁଥିଲା ମୋର ଭବିଷ୍ୟତ ।

ଅସଂଖ୍ୟ ପାହାଚ ପରି ସମସ୍ତ ଲମ୍ବିଛି
ଅନ୍ଧାର ପାତାଳ ଆଡ଼େ । ଆତ୍ମା ଏକୁଟିଆ

ହର୍ଷଶୂନ୍ୟ ଆଶାଶୂନ୍ୟ କ୍ରୋଧଶୂନ୍ୟ ହୋଇ
ନିଜ ନିର୍ବୋଧତା ବୋଝ ବୋହି ଚାଲିଯାଏ ।

କୌଣସି ପ୍ରାର୍ଥନା ମୋର ମନେ ପଡ଼ୁନାହିଁ

୪

**ଭାଗ୍ୟରେ ନ ଥିଲା ମୋର**

ଭାଗ୍ୟରେ ନ ଥିଲା ମୋର ସେ ଏଠାକୁ ଆସିବ, ତଥାପି
ମନେ ଲାଗୁଥିଲା ମୋର ଅପେକ୍ଷାରେ ପ୍ରତିଘଣ୍ଟା ତାର
ଆସିବାର ପୂର୍ବବର୍ତ୍ତୀ ଘଣ୍ଟା । ଯେତେବେଳେ
ସମସ୍ତ ନିଃଶେଷ ହେଲା ଦୁରଦିଗ୍ବଳୟେ
ମୁଁ ଦେଖିଲି ସିନ୍ଧୁ ପରି କଳାଚାଦରଟିଏ, ଆକାଶରେ
ଖଣ୍ଡେ ଖଣ୍ଡେ କଳାମେଘ । ପବନ ହଠାତ୍
ଖୁବ୍ ଥଣ୍ଡା ଜଣାଗଲା, କିନ୍ତୁ ବର୍ଷା ଏବଂ ମୋ ଭିତରେ
ଶହଶହ ଶତାବ୍ଦୀ ତଫାତ୍ ।

କାନ୍ଦକାନ୍ଦ ଆଖି ମୋର, ବର୍ଷାକୁ ଭାବିଲି,
ଭାବିଲି ପ୍ରତିଟି ବର୍ଷାଟୋପା ପଡ଼ିବାର
ସଙ୍ଗୀତକୁ, ଅନିର୍ଦ୍ଦିଷ୍ଟ ଦିଗୁଁ
ହଠାତ୍ ଆସିବ ମାଡ଼ି ଉଦାସରସର
ବତାସ ଓ ସମ୍ଭବତଃ ସବୁ
ସ୍ୱପ୍ନ ସତ୍ୟ ହେବେ । ପ୍ରେମିମାନେ
ହସିବେ ନଜାଣି ଏହି ଦେହ ବଡ଼ ବିଶ୍ୱାସଘାତକ ।
ଉଭୟଙ୍କୁ ଠକି ଦେବ, ଧରା ଦେଲା ବେଳେ
ଯୌବନ ବହଲେ ଥିବ ମୃତ୍ୟୁର ଆତଙ୍କ ।

ଏପରି ସମୟେ ମନା ଭାବିବା ନିମିତ୍ତ
ଜହ୍ନକ ହୃଦୟ ଅଜ ପ୍ରସାରିତ ହାତ ।

୫

## ଏକଦା ଶରୀର ମୋର

ଏକଦା ଶରୀର ମୋର ଛେଳୁଥିଲା ସହସ୍ର ଆକାର ।
ପ୍ରତ୍ୟେକ ଆକାର ଥିଲା ମନୋରମ, ଯେପରି ଆକାଶ ।
ଅସୁନ୍ଦର ହେବା ଥିଲା ଅସମ୍ଭବ । ମାଂସରେ ରକ୍ତରେ
ପ୍ରତିଧ୍ୱନି ଥିଲା ପକ୍ଷୀମାନଙ୍କର କାକଳିର ଏବଂ ଝରଣାର
କୁଳୁକୁଳୁ ବୋହିବାର, ଶୂନ୍ୟତା ଭିତରେ
ଅନେକ ଜାଗାର ସ୍ମୃତି ବୋହିଆଣୁଥିବା ପବନର ।
ଏପରି ସମ୍ପୂର୍ଣ୍ଣ ଥିଲା ଯେତେବେଳେ ମୋ ଶରୀର ବହୁ
ଶରୀର ପାଲଟୁଥିଲା, ଗୋଟିଏ ହଜିଲେ
ଅନ୍ୟ ଏକ ଜାଗୁଥିଲା, ଯଦି ଭଲପାଏ
ଗୋଟିଏ ଶରୀର ତେବେ ଅନ୍ୟ ଏକ ସାରା ରାତି ଜାଗି
ସମ୍ମତି ଅପେକ୍ଷା କରି ସମ୍ପୂର୍ଣ୍ଣ ବଢାଏ ।

ଆଜି କିନ୍ତୁ ମୋ ଶରୀର ଏକ, ବିଭକ୍ତ ହେବାର
ସାହସ ନାହିଁ, ଓ ଆଜି ଅଳ୍ପଦିନ ପରେ
ଏତକ ବି ଉଡ଼ିଯିବ ବିଧବାର ସ୍ୱପ୍ନ ପରି । ସବୁ
ପଛରେ ରହିବ ପଡ଼ି—ନଈ ଓ ବଗିଚା ।
ନଈର ପାଣିରେ ଥିବ ସହରର ପଙ୍କ ଆବର୍ଜନା ।
ଆକାଶରେ ଉଡ଼ୁଥିବେ ଶାଗୁଣା ଓ ବଗିଚା ଭିତରେ
ସାଧାରଣ ସଭା ହେବ, ଛେପ ସୁଙ୍ଘୁଙ୍ଘୁ,
ଭାଷଣରେ ତୃପ୍ତ ହେବ ଲୋକଙ୍କ କାମନା ।

ପୃଥିବୀର ସବୁକିଛି ପରି ଏ ଶରୀର
କ୍ରମେ ବିକଳାଙ୍ଗ ହୁଏ, ସବୁ ଲୁଚିଯାଏ
ମସ୍ତବଡ଼ କୁତ୍ସିତତା ଭିତରେ । ଯାହା ବା ରହିଲା
ଝଡ଼ି ଯାଉଥିବା ଫୁଲ ପରି ତାହା ସୁନ୍ଦର ହସେ, ତା
ଆଲୋକିତ ପାଖୁଡ଼ାରେ ସ୍ପୃଶଇପଡ଼େ ଆସନ୍ନ ମୃତ୍ୟୁର ।

## ଦୂରତ୍ୱର ତିନୋଟି ଅଙ୍କନ

୧

ଏକଥା ସଠିକ ବୋଲି ଜାଣିଥିଲି, ପ୍ରତ୍ୟହ ଦେହର
କୌଣସି ଜାଗାରେ କିଛି କଷ୍ଟ ହେବ ଏବଂ
ତାହାର ତଦାରଖ ଲାଗି ଯେତେବେଳେ ଲାଗିବ ତାହାର
କାରଣ ନିର୍ଣ୍ଣୟ ପାଇଁ ବେଶୀ ବେଳ ଲାଗିବ । କିନ୍ତୁ ମୁଁ
ଜାଣି ନ ଥିଲି ଯେ ଆମେ ଏକାଠି ରହିବା
ବର୍ଷ ସବୁ ଛାଡ଼ିଦେବେ ଶତ୍ରୁତାର ବର୍ଷଙ୍କୁ ବାଟ ଓ
ଆମେ ଦୁହେଁ ଆଗ ପଛ ହୋଇ ଦୌଡ଼ୁଥିବା,
ମୁଁ ଅନନ୍ୟଗାମୀ ହୋଇ ଦୌଡ଼ୁଥିବ ହରିଣ ପରି ମୋ
ପିଛା ତମେ ଧରୁଥିବ, ବନ ଘାଟ ଆମେ
କଣ୍ଟକ ପାହାଡ଼ ବଣ ମରୁଭୂମି ଡେଇଁ
ପରସ୍ପରର ଛୁଇଁଥିବା କ୍ଳାନ୍ତ ଓ କ୍ରୋଧରେ,
ଯେବେବା ମନର ଦର୍ଜ୍ଜା ନିକଟକୁ ପାଦ ଟିପି ଟିପି
ପୁରୁଣା ନରମ ସ୍ମୃତି ଆସେ ଚଢ଼ି ଦେବା
ରୁକ୍ଷ ଦ୍ୱିଧାହୀନ ବଜ୍ରଗମ୍ଭୀର ସ୍ୱରରେ ।

ମୁଁ ଭାବୁଛି ମଲା ଲୋକ ମାନଙ୍କୁ ଏପରି
ଦିଶୁଥିବ ସେମାନଙ୍କ ଅତୀତ ଜୀବନ ।
ଘଟଣା ଘଟନା ଏବଂ ସ୍ଥାନମାନେ ବୋଧେ
ଦିଶୁଥିବେ ରକ୍ତ ମ୍ଳାନ ଆଖିରେ ତାଙ୍କର ।

ରକ୍ତ ସତ ହୋଇଥିବ,
ଆଖି କଳୁ ହୋଇଥିବ ଅଂଶ ପବନର,
ହାତ ମଧ୍ୟ ହୋଇଥିବ ପବନର ହାତ,
ମୃତଦେହଂ ସେ ହାତରେ ପୋଛୁ ହେବ ନାହିଁ
ସେ ରକ୍ତକୁ ଯେଉଁଥିରେ ସମସ୍ତେ ରଞ୍ଜିତ,
ପୁତ୍ର କନ୍ୟା ପତ୍ନୀ ବନ୍ଧୁବାନ୍ଧବ ଇତ୍ୟାଦି,
ଘର ଦ୍ୱାର ନଈ ନାଳ ପାହାଡ଼ ପର୍ବତ ।

୨

ଖୁବ୍ ବଡ଼ ପୋଖରୀର
ସେ ପାଖରେ କଆ ବଣ ଆଉ
ଖୁବ୍ ସରୁ ବାଟଟିଏ କଆ ବଣ ଭିତରେ, ସେ ବାଟ
ଅନ୍ଧକାରେ ସରେ, ତା ଉତ୍ତରେ
କଣ ଅଛି ? ଲୋକଙ୍କର ଦୁଃଖ,
ଆଉ ସେଇ ଅନ୍ଧକାର ଯାହା ଆସେ ନିର୍ଦ୍ଦୋଷ ଜୀବନ
ସରିଯିବା ପରେ ଅଶ୍ରୁନକ ।

ଏପରି ସମାପ୍ତ ହେଲା
ଏକତ୍ରିତ ସମସ୍ତ ଆମର ।
ନଡ଼ିଆ ଗଛରୁ ଏବେ
ଓହ୍ଲାଉଛି ଏକା ଜାଇଁବାର
ଅନ୍ଧକାର, ବାଟ ଘାଟ କଛି
ଦିଶୁ ନାହିଁ, କେଜାଣି କେଉଁଠି
ଚେମେଣିଙ୍କ ଚିଁ ଚିଁ ଶବ୍ଦ ଶୁଭୁଅଛି ।

ଏହା ଆମ ଗାଆଁ ଯେଉଁଠି ମୁଁ
ପିଲାଦିନୁଁ ଅଛି, ଆଜ ତାର
ମୂର୍ଚ୍ଛାର ନିଃଶ୍ୱାସ ନିଏ ଅନ୍ୟ ଏକ ବାୟୁମଣ୍ଡଳରେ,
ବୁଲେ ବୁଲେ ଅନ୍ୟ ଏକ ଆଲୋକରେ, ସେଠି

ତମେ ଅନ୍ଧ । ଆମ ଗାଆଁ ଠାରୁ
ମୋ ଆତ୍ମବନ୍ଧୁତା ଏବଂ ନିର୍ଜ୍ଜନତା ଅନେକ ଦୂରରେ ।

୩

ଆଜ ବି ତମର ପ୍ରତି ମୋର ସ୍ନେହ
ସର୍ବୋତ୍ତମ, ଆଜ
ମୁଁ ଦେଖୁଛି ନାନା ରୂପ—ଶାଗୁଣାର, ମାଛର, ବଣରେ
ବୁଲୁଥିବା ବାର୍ହାର ଓ ପ୍ରତ୍ୟେକ ଆକାର
ଗୋଟିଏ ଗୋଟିଏ ସାକ୍ଷ୍ୟ ମୋ ନିଜର ଅଧଃପତନର ।
ମୁଁ ଯେତେ ନିକଟବର୍ତ୍ତୀ ହୁଏ ଏହି ରୂପମାନଙ୍କର
ସେତିକି ମୁଁ ଭାବେ ଯେ ମୁଁ ଭଲପାଏ ତମକୁ, ଅଭ୍ୟୁତ
ଏ ଭଲ ପାଇବା, ଯେଣୁ ମିଳନରେ ନୁହେଁ
ଦୂରେଇ ଯିବାରେ ପୂର୍ଣ୍ଣ ତାର ମନୋରଥ ।

ମୋଠାରୁ ଦୂରେଇ ଗଲେ ତମକୁ ମୁଁ ଦୋଷଦିଏ ନାହିଁ ।
ସେ ତ ମୋର କର୍ମଫଳ, ମୁର୍ଦ୍ଦାର ଖାଇବା
ପାଣି ତଳେ ରହିବା ଓ ଘୋର ଅରଣ୍ୟରେ
ବୁଲିବା ମୋ କର୍ମଫଳ, ତା ଉତ୍ତରେ ଯିନା
ତମର ନିକଟବର୍ତ୍ତୀ ହେବି କେଉଁ ସମୟାନ୍ତରରେ ।

କେବଳ ଗୋଟିଏ ଦୁଃଖ—ଏଠାରେ ପବନ
ଖୁବ୍ ଥଣ୍ଡା, ସୂର୍ଯ୍ୟ ଦିଶେ ନାହିଁ ।
ଆଶା କରି ଚାଲିଗଲି ଏତେଦିନ, ଏଣିକି ମୋ ଆଶା
ଦିନୁଁ ଦିନ କ୍ଷୀଣ ହୁଏ, ଦିନୁଁ ଦିନ ତମ
ଫଟୋଗ୍ରାଫ୍ ଫିକା ପଡ଼େ, ଏବଂ ମୋର ମନ
କ୍ରମଶଃ ଚିହ୍ନୁଛି କିଣ ଅତୀତ ଓ କିଣ ବର୍ତ୍ତମାନ ।
ଆକାଶର ଅନ୍ଧାରରେ ଦେଖୁଅଛୁ ଗୋଟିଏ ଆକୃତି
ଯାହାର ଆଖିରେ ନାହିଁ ସାନ୍ତ୍ୱନା ବା ସମ୍ଭାବନା, ଯାହା
ପୂରଣ ବର୍ଜ୍ଜିତ ମୃତ୍ୟୁ ସହିତ ସମାନ ।

## ପ୍ରେମପତ୍ର

ବର୍ତ୍ତମାନ ଅସମ୍ଭବ ତମ ନିକଟକୁ
ଚିଠି ଲେଖିବା । ମୁଁ କେତେ ଆଶାକରେ ଖୋଲନ୍ତି ଝରକା
ମନଇଚ୍ଛା ପିଇଯାନ୍ତି ସମୁଦ୍ର ପବନ
ତା ପରେ ବସନ୍ତି ଲେଖି ଯାହା ପୃଥିବୀର
ସବୁଠୁଁ ଆବେଗପୂର୍ଣ୍ଣ ପ୍ରେମପତ୍ର ହୁଅନ୍ତା ଓ ପ୍ରତି ପାରାଗ୍ରାଫ୍
ବର୍ଣ୍ଣନା କରନ୍ତା ଏକ ସୁବାସିତ ସ୍ୱପ୍ନ, ସେ ସ୍ୱପ୍ନର
ଅଳ୍ପ ଆଲୋକିତ ଗଳିକନ୍ଦିରେ ମୁଁ ତମେ ଥିବା ଜାଗାକୁ ଯାଆନ୍ତି
ସେ ଚିଠି ପଢ଼ିଲା ପରେ ତମେ ବୁଝିପାରନ୍ତ ମୁଁ ଜାଣେ
ମୃତ୍ୟୁର ଶୀତଳ ଦୁର୍ଗ ଭାଙ୍ଗିବାର କୁହୁକବିଦ୍ୟା, ମୋ
ନିଃଶ୍ୱାସରେ ସବୁ ଋତୁ ଅବସ୍ଥିତ, ଶୀତଦିନ ରାତିରେ ଫୁଟିବା
ମଲ୍ଲୀଫୁଲ ଖୋଜିବ ତା ମିଳିବ ମୋ ଆତ୍ମସମର୍ପଣେ ।

ବର୍ତ୍ତମାନ କିନ୍ତୁ ଅସମ୍ଭବ
ତମ ନିକଟକୁ ଚିଠି ଲେଖିବା, କେବଳ
ସ୍ୱପ୍ନରେ ବା ସ୍ୱପ୍ନପରି ନିରର୍ଥକ ମନେ ପଡ଼ିବାରେ
ତମେ ଦେଖାଦେବ, ଯେତେବେଳେ ଆଖି
ଖୋଲାଥିବ ଓ ଅଙ୍ଗପ୍ରତ୍ୟଙ୍ଗ
ମୋ ସଚେତ ଇଚ୍ଛାମତେ ହେବେ ଚଳାଚଳ
ତମେ ହେବ ଇତିହାସ, ଏକ ପ୍ରାଗୈତିହାସିକ ସହର
ଯାହା ପୋତି ହୋଇଗଲା ସମୁଦ୍ର ତଳେ ଓ

ଯାହାର ବକ୍ଷିପ୍ତ ଖଣ୍ଡେ ଦୁଇଖଣ୍ଡ ଇଟା
ଦୃଷ୍ଟିରେ ପଡ଼ିବ କେଉଁ ଦେଖଣାହାରର ।

ମୁଁ ମଧ୍ୟ ବଦଳିଗଲି ଅସମ୍ଭବ ଭାବେ ।
ମୁଁ ତମକୁ ହରାଇଲି କମ୍ବା ହରାଇଲି
ମୋ ସଦୃଶ ଦିଶୁଥିବା ମୋର ଅନ୍ୟରୂପ ?
ତାର କଣ୍ଠସ୍ୱର ମୋର କଣ୍ଠସ୍ୱର ପରି
ଯଦିଓ ସେଥିରେ ଥିଲା ଶୀତଳତା, ପ୍ରଚ୍ଛନ୍ନ ବଦ୍ରୂପ ।

ସେ ରୂପ ମୁଁ ହୁଏ କମ୍ବା ତାହା ହେଉ ଏକ
ମୋ ଆତ୍ମାର ଲୁକ୍‌କାୟିତ ଅଙ୍ଗାରରେ ଗଢ଼ା
ପ୍ରତିମୂର୍ତ୍ତି, ମୋର ନାଆଁ ଆଜ ତାର ନାଆଁ
ସେ ପାଇବ ଦୁନିଆଁର ସହାନୁଭୂତି, ମୁଁ
ଅନ୍ଧାର ରାତିରେ ଏକ ପାହାଡ଼ରୁ ଅନ୍ୟ ପାହାଡ଼କୁ
ଯାଉଥିବ, ଆକାଶ ଗୋଟାକ
ତାରାମାନେ ଖୁନ୍ଦାଖୁନ୍ଦି, କାହିଁ କେତେଦୂରେ
ଓ କେଉଁ ସମୟାନ୍ତରେ ମୁଁ ହେବ ଯେ ପତ୍ରଲେଖକ
ଅନେକ ଦେହାନ୍ତ ପରେ ଯାହାର ଇତର
ସର୍ତ୍ତମାନେ ମରିଯିବେ, ନର୍ମଳ, ଅଜ୍ଞାତ
ସାଙ୍ଗେ ଏକାକାର ହେବ ଶୂନ୍ୟ ଭବିଷ୍ୟତ ।

ମତେ ଲାଗେ ମୋ ଦେହାନ୍ତ ଆରମ୍ଭ ହେଲାଣି ।
ଝରଣାର କୁଳୁକୁଳୁ ବୋହିବା ଶବ୍ଦରେ
ସମ୍ଭାବନା ନମନ୍ତ୍ରଣ କରୁନାହିଁ ଖାଲି
ଗୋଟିଏ ଦେହର ଧ୍ୱଂସ ପରବର୍ତ୍ତୀ ବଳାପ ଶୁଭେ ଓ
ମୋ ପ୍ରେମପତ୍ରର ଭାଷା ଶୁଭେ ମଧ୍ୟ ଅସ୍ପଷ୍ଟ ସ୍ୱରରେ ।

## ଧନୀ ପ୍ରତି ଭୃତ୍ୟର ଉକ୍ତି

ମହାଶୟ ! ଆପଣଙ୍କ ହାତରେ ଲାଗିଛି
ରକ୍ତର ଛିଟିକା । ଯେଉଁ ଲୋକ କାଲି ଆସିଥିଲା
ଏ କଣ ତାହାର ରକ୍ତ ? ଯାହା ରକ୍ତ ହେଉନା କାହିଁକି
ବର୍ତ୍ତମାନ ଆଣିଦେବ ପାଣି ଓ ସାବୁନ୍ ।
ସବୁଦାଗ ପୋଛିଦେବା ଆମ କାମ, ଦେହରୁ ମନରୁ
ସବୁ ଦାଗ ପୋଛିହେବ, କେଉଁଦାଗ କିଏ ଛାଡ଼ିଥିଲା
ଆମେ କଣ ପାଇବୁ ସେଥିରୁ ?

ତଥାପି ବି ମରିବାର ମୁହୂର୍ତ୍ତି କପରି
ହୋଇଥିବ ଭାବିବାକୁ ଇଚ୍ଛାହୁଏ, ଯେଉଁ ଲୋକ ମଲା
ସେ ନିଶ୍ଚୟ ତମ ହାତ ଧରିଥିବ ଜାବୁଡ଼ି, ତମକୁ
ପ୍ରାର୍ଥନା କରିଲା ପରି ଚାହିଁଥିବ ପ୍ରଥମେ ତାପରେ
ତମକୁ ସେ ଚାହିଁଥିବ ଅବାକ୍ ହୋଇ ଓ
ବୁଝିବାର ସେ ସଂକ୍ଷିପ୍ତ, ନିଃଶବ୍ଦ ବେଳରେ
ସବୁ ରଙ୍ଗ ହଜିଥିବେ କଳା, ତସବମାନେ
ପ୍ରତାରଣା ଦେଖିଥିବେ ହାତୁଡ଼ିଭୂତ ମୁଖର ଭାବରେ ।

ତଥାପି ବି ଭାବିବାକୁ ଇଚ୍ଛାହୁଏ
ଯେଉଁ ଲୋକ କାଲି ମଲା ସେ କପରି ଭାବେ ଆସିଥିବ,
ସ୍ୱପ୍ନଙ୍କର ଆଶାବାଡ଼ ଉପରେ ସେ ଗୋଛାଟାଲୋକ ପରି

ଖବରଦେଇ ଆସିଥିବ, ଘୁଷ୍ଟ୍ବାଙ୍କ କେତେ ଅପନ୍ତ୍ରା
ଆସିଥିବ ଧୂଧୂ ଖରବେଳେ ଅତିକ୍ରମ କରି,
ଗତାଗତ କେତେ ରେଳପଥ ଡେଇଁଥିବ,
ଖୋଜଥିବ କେତେ ଶବ୍ଦ ଯେଉଁଥିରେ ଅନ୍ଧାର ଭିତରେ
ଅର୍ଦ୍ଧାଧିକ ଲୁପ୍ତ ଏକ ଜୀବନର ଗ୍ରେଟ ଗ୍ରେଟ ଆଶା
ମନ ମୁତାବକ ଭାବେ ପ୍ରକାଶ ପାଇବ ।

ଏଠାରୁ ଗୃହିଁଲେ ଦିଶେ
ସେହିସବୁ ଅପନ୍ତ୍ରା ଏବଂ କୋଡ଼ିଏଟି
ଶତାବ୍ଦୀଙ୍କ ଅନୁପର ଛିନ୍ନଛିନ୍ନ ରେଳପଥ ଏବଂ ରାଜପଥ,
ଏଠାରୁ ଗୃହିଁଲେ ଦିଶେ ଶୁଖିଯାଇଥିବା ନଈଟିଏ
ପତ୍ରହୀନ ଗଛ ଧାଡ଼ ଧାଡ଼,
ମରୁଭୂମିମାନଙ୍କର ନିଃଶ୍ୱାସ ବି ଏଠି ଶୁନିଭେ ଏବଂ
ଶୁଭେ ମହାଶୂନ୍ୟେ ଘଡ଼ଘଡ଼ ।

ଏ ସବୁ ଆପଣଙ୍କର, କୁଣ୍ଡା ତଳେ ଥିବା
ଗ୍ରେଟ ଛୁରୀଟିଏ ବଡ଼ କୌଶଳରେ ବ୍ୟବହାର କରି
ଏବଂ ବ୍ୟବହାର କରି କରୁଛି ଶବ୍ଦ ଯାହା ଆପଣଙ୍କ
ଉଦ୍ଦେଶ୍ୟର ପୂର୍ବାପର ଉପସ୍ଥିତ ଅର୍ଥ ପୂରାଇଲେ
ଆଖି ପିଛୁଡ଼ାକେ କେତେ ବଡ଼ ସମ୍ପତ୍ତିର
ମାଲିକାନା ଆପଣ ପାଇଲେ !

ଏ ସବୁ ଆପଙ୍କର, ଏବଂ ଗତକାଲି
ନିହତ ବ୍ୟକ୍ତିର ଶେଷ ନିଃଶ୍ୱାସରୁ ଉଦ୍ଭବ ପ୍ରଶ୍ନ ବି
ଆପଣଙ୍କର, ସେ ପ୍ରଶ୍ନ ଦୁଆର ଆଗୁଳି
ବସିଅଛି ମୁଁ ଧରିଛି ପାଣି ଓ ସାବୁନ୍,
କପରି ଡେଇଁବ ତାକୁ ? ଆପଣଙ୍କ ଶ୍ରୀହସ୍ତ ମୁଁ କପରି ଧୋଇବ ?

# ହଜିଲା ପିଲା

ନଙ୍ଗୁଟିଆ ବଡ଼ ପଡ଼ିଆରେ
ଏକୁଟିଆ ରହିଗଲା ପିଲାଟି, ତା ମାଆ
ଲୋକ ଗହଳରେ ଗଲା ଦୂରକୁ, ମାଆର
କାନରେ ଅଲଗା ସ୍ୱର ଓ ଆଖିରେ
ଅଲଗା ଦୃଶ୍ୟ । ଭଉଣୀ ବି ଗଲା
ଲୋକଗହଳରେ ବହୁଦୂରକୁ, ଅଜଣା
ଗାଆଁରେ ପିନ୍ଧିବ ଫୁଲ, ନୂତନ ଭାଇକୁ
ଆଶ୍ୱାସନା ଦେବା ମେଘ ଘୂଞ୍ଚିଗଲା ।
ଆକାଶଟା ଫାଙ୍କା । ଉପେକ୍ଷାରେ ଘୂର୍ଣ୍ଣି
ବୋହୁଁ ବେଳ କାକର ପବନ ।

ନଙ୍ଗୁଟିଆ ବଡ଼ ପଡ଼ିଆରେ
ଏକୁଟିଆ ରହିଥିବା ପିଲାଟି ଅପେକ୍ଷା
କରୁଛି ତା ପୃଥିବୀର ସମାପ୍ତି ନିର୍ଜନ
ସମୟରେ ଯେତେବେଳେ ସବୁ ସ୍ୱର ହେବ
ସ୍ତବ୍ଧ, ତା ମାଆର ସ୍ୱର ଭଉଣୀର
ସ୍ୱର ଏବଂ ପକ୍ଷୀଙ୍କର କାକଳି ନୀରବ
ହେବ ଏବଂ ଉଲ୍ଲସିତ ଅନ୍ଧତାବଶତଃ
ଆସିଥିବା ମିଳନର ପ୍ରତିହଳକା ସବୁ
ଦିନପାଇଁ ଅନ୍ତର୍ହିତ ହେବ ।

ପଡ଼ିଆ ହେଉ ବା ହେଉ
ସ୍ତା କେଉଁ ବସନ୍ତର, ମୃତ୍ୟୁ
ସବୁଠିଁ ସମାନ, ସମାନ ତଗେଠ ବର୍ଷା,
ପବନ ଅସ୍ତବ,
କନ୍ଦିବାର ଷମତାର ସମାନ ବିନାଶ ।
ହାତ ଖୋଜେ ଅନ୍ୟ ଏକ ହାତ, ବାଟ ଖୋଜେ
ଅଡ଼ୁଆ ନାଡ଼ିରେ ଛନ୍ଦା
ଜାଗ୍ରତ ନିଃଶ୍ୱାସ ।
ଊର୍ଦ୍ଧ୍ୱେ ସୂର୍ଯ୍ୟ, ଊର୍ଦ୍ଧ୍ୱେ ଚନ୍ଦ୍ର,
ସେ ରୁନ୍ଧୁଛି ସୂର୍ଯ୍ୟ ଚନ୍ଦ୍ର ମଧ୍ୟେ ଥିବା
ସଂକୀର୍ଣ୍ଣ ବାଟକୁ ।
ଆକାଶ ଅନ୍ଧାର ହୁଏ କିଛି ଦିଶେନାହିଁ,
ଉତ୍ତପ୍ତ ନିଃଶ୍ୱାସ ଫେରେ କୋମଳ ପଦ୍ମକୁ,
ପ୍ରତ୍ୟେକ ପାଖୁଡ଼ା ପୋଡ଼େ,
ପୋଡ଼େ ଭବିଷ୍ୟତ,
ତ୍ରିବେଣୀ ସଙ୍ଗମ ସ୍ଥାନ
ଏ ଜନ୍ମର ସୀମା ବହିର୍ଭୂତ ।

# ଶାଗୁଣା

ଗାଆଁ ମୁଣ୍ଡ ନିମଗଛ ଉପରେ ବସିଛି
ଶାଗୁଣା, ତା ଦୃଷ୍ଟିପଡ଼େ
ଧୂଳି ଖେଳ ଖେଳୁଥିବା ପିଲାଙ୍କ ଉପରେ,
ସବୁ ଲୋକମାନଙ୍କ ଉପରେ, ସତେ କି
ତା ଦୃଷ୍ଟି ଯେଉଁଠି ପଡ଼େ
ଏ ପୃଥିବୀ ସରେ ସେଇଠାରେ ।

ହଠାତ୍ ଶରୀର ହୁଏ ରୋଗାକ୍ରାନ୍ତ,
ଚମ ଚକ୍ଟି ମାଂସ ଝଡ଼ିଯାଏ,
ଟାଇଁ ଟାଇଁ ଖରାପିଟେ ଫଟାଭୂଇଁ ଉପରେ, ହଠାତ୍
ପଲପଲ ବଲୁଆ କୁକୁର,
ଜନଶୂନ୍ୟ ବାଲିବାଡ଼ ଗାଆଁ ଦାଣ୍ଡ ସ୍କୁଲ ଓ ଦୋକାନ,
ଦଗ୍‌ଦଗେ କାନ୍ଦଣାର ସ୍ୱର ।

ମୁଁ କହିଲି ମୋ ପୁଅକୁ ଯା ଯା
ଚାଲି ଯା ଦୂରକୁ
ଯେ କୌଣସି ମତେ ଯା, ମରି ପଛେ ଯା,
ଅନ୍ତତଃ ତୋ ଆତ୍ମାରହୁ ପ୍ରଫୁଲ୍ଲ, ଏଠାରେ
ମୃତ୍ୟୁର ପ୍ରଥମ ଚୋଟ ଆତ୍ମାରେ ବାଜେ ଓ
ଶରୀର ନିଷ୍ପ୍ରାଣ ହୁଏ ଅନେକ ପରେ ।

ଯିବା ଖୁବ୍ କଷ୍ଟ, ଏ ଗାଆଁର ଗଛେ ଗଛେ ଫୁଲ ।
ଡାଳେ ଡାଳେ ମିଠାଗୀତ ଗାଉଥିବା ପକ୍ଷୀଙ୍କ ଗହଳ ।

ଏଠାରେ ଅନ୍ଧାର କେଉଁ ଘନୀଷ୍ଟ ଏଠାରେ
ଆକାଶର ତାରମାନେ ଅତ୍ୟନ୍ତ ଉଜ୍ଜ୍ୱଳ,
ତଥାପି ଯିବାକୁ ହେବ,
ଶାଗୁଣାର ଅପ୍ରମିତ ଭୋକ
ନଷ୍ଟପ୍ରୁ ହନେ ନା ହନେ
ପାଇବ ତା ମାଂସର ସୁରକ,
ତାପରେ ସେ ମୂକ ହେବ, ଅଥବା ବାତୁଳ,
ଚମଡ଼ାରେ ଲାଗିଥିବ ମୃତ୍ୟୁର ମୋହର,
ଅବଶିଷ୍ଟ ଜୀବନ କେବଳ
ଡର, ମୁଣ୍ଡପୋଡ ଗୁଳିବା, କେଜାଣି
ସଳଖ ଚେତହେବ ଦେଖି ଶାଗୁଣା ଭାବିବ
ଏ ଲୋକର ବର୍ତ୍ତମାନ ପାଳି ଆସିଲାଣି ।

ଅବାରମ ମୃତ୍ୟୁର ଏ ଇଲାକା, ଏଠାରେ
ନରକଙ୍କାଳର ପର ଦେଖାଯିବା ଲାଗି
ବଞ୍ଚିଥିବା ଲୋକମାନେ ଯତ୍ନ ସହକାରେ
ଚେଷ୍ଟାକରୁ ଥାନ୍ତି, ପ୍ରଥମେ ପ୍ରଥମେ
ଶାଗୁଣାକୁ ଡର, କିଛି କାଳ ପରେ
ଅଭ୍ୟାସବଶତଃ କମ୍ପା ସଜକ ଭାବରେ ।
ଏଠାରେ ମରିବା କିନ୍ତୁ ବହୁତ ଆରାମ ।
ମୃତ୍ୟୁର ଚତୁର୍ଦ୍ଦିଗେ ଅନବଚମୀୟ
ପ୍ରାକୃତିକ ସୌନ୍ଦର୍ଯ୍ୟ, ନାନାଦ୍ୱ ପକ୍ଷୀଙ୍କ
କାକଳିରେ ମୁଖରିତ ଗଗନ ପବନ ।
ସବୁ ତିକ୍ତ ସ୍ମୃତି ଭୂଲି ଦେବତାମାନଙ୍କ
ଖେଳପଡ଼ିଆରୁ ବୋହି ଆସୁଥିବା ନଦୀମାନଙ୍କର
ଶୀତଳ ଜଳରେ ଅସ୍ଥି
ନିସ୍ତାରର ଆନନ୍ଦେ ବହୋର ।

# ବୁଡ଼ି ମରିବା

ନଈରେ ବୁଡ଼ିଲା ବେଳେ, ସ୍ରୋତ ଯେବେ ଅତ୍ୟନ୍ତ ପ୍ରଖର,
ସବୁଠୁଁ ଉତ୍ତମ କଥା ତାରିଫ୍ କରିବା
ଏପରି ମୃତ୍ୟୁକୁ, ବୁଡ଼ି କରି ମରିବା ଅପେକ୍ଷା
ଭଲ ମୃତ୍ୟୁ ନାହିଁ ଏହା ପ୍ରମାଣ କରିବା ।

ଯେପରି ମୁହୂର୍ତ୍ତେ କାହା ମୁହଁ ହସେ, ତାହା
ସମୁଦାୟ ଆକାଶକୁ ଆଚ୍ଛାଦିତ କରେ,
ସେପରି ମୁହୂର୍ତ୍ତେ ସବୁ ରହସ୍ୟ ପ୍ରାଞ୍ଜଳ
ହୋଇଯାଏ, ଦୁଃଖ ହସେ ସାକାର ରୂପରେ ।

ଯାହା ଆଶାତୀତ ତାହା ଆଶାତୀତ ରହିଗଲା, ଯେବେ
ସେ ନିକଟବର୍ତ୍ତୀ ଥିଲା ସମ୍ମୋହନକାରୀ
ଅଥଚ ଅବୋଧ ଗୀତଟିଏ ପରି ଥିଲା,
ନିଜକୁ ସଜାଡ଼ି ନେବା ଲାଗିଥିଲା ଯଥେଷ୍ଟ ସମୟ ।
ତମ ନିର୍ବୋଧତା କିନ୍ତୁ କେବଳ ହସିଲା ।
ହସିବା କାରଣ ସବୁ ଭୁଲ୍, ଏବଂ ରୁହୁଁ ରୁହୁଁ
ଅକାତ ନଈରେ ବୁଡ଼ି ମରିବାର ସମୟ ଆସିଲା ।

ନଈର ନଥାଏ ସ୍ମୃତି, ନଥାଏ କରୁଣା ।
ଈଶ୍ୱରଙ୍କ ଅନୁକମ୍ପା ଏଡ଼ାଏ ତାର
ପ୍ରମତ୍ତ ହିଂସ୍ରତା । ତମେ କିଏ ? ଠିଆ ହେବା ଲାଗି
ଅସମର୍ଥ, ଅକିଞ୍ଚନ ଲୋକ,
ଆଜିର ଏ ଦୁର୍ଘଟଣା ଆଗୁଁ ତମେ ଫିଙ୍ଗି ଦେଇଅଛ
ଆଶୀର୍ବାଦ ଅନେକ ସଂଖ୍ୟକ ।

# ନିଜେ ନିଜେ

୧

ବହୁଦିନୁଁ ଦେଖିନାହିଁ ତାକୁ ।
ଆଜିକାଲି କିପରି ସେ ଦିଶେ ?
ସେ ହେଲେ ଆସନ୍ତା ଥରେ ଏ ସ୍ୱପ୍ନରେ,
ମୁଁ ତାକୁ ଦେଖନ୍ତି ପୁନର୍ଜ୍ଜୀବିତ ଉଲ୍ଲାସେ ।
ମୋ ଲୋଳଚର୍ମ ତଳେ ପୁଣି
ମାଂସ ଆସେ ରକ୍ତ ଆସେ ଏବଂ
ବୃକ୍ଷଲତା ପରିପୂର୍ଣ୍ଣ କାନ୍ତାର ଭିତରେ
ସକଳ ସମ୍ବନ୍ଧ ଛିନ୍ନ, ମୋ ବଣ୍ୟ ମନରେ
ଓ ସ୍ୱାଧୀନ ଶରୀରରେ ଜିଦ୍ଦୀପନା, ଭୋକ, ଦୁଃସାହସ,
ପୁନର୍ବାର ଆପଣାକୁ ପ୍ରଦର୍ଶନ କରିବା ଆଗ୍ରହ ।
ପଛକୁ ଓଟାରି ହୋଇ ଫେରେ ବିପଜ୍ଜନକ ବୟସ ।

ମତେ ଆଚମ୍ବିତ ଲାଗେ
ଦେଖି ମୋର କାମନାମାନଙ୍କୁ,
ସତେ କି ସେମାନେ କଲେ ବିଦ୍ରୋହ ଘୋଷଣା ।
ମୁଁ ତ ଖୁବ୍ ଦଣ୍ଡିଥିଲି ମୋ ଦେହକୁ, ଲୋକ ଲୋଚନର
ଅନ୍ତରାଳେ କାରାଗାରେ ବନ୍ଦୀ କରିଥିଲି ।
ଅପବିତ୍ର ଚିନ୍ତାଧାରୁ ଦୁରଭିସନ୍ଧିକୁ
ନିର୍ବାସିତ କରିଥିଲି । ଆଜି କିନ୍ତୁ ମୋ ସର୍ବାଙ୍ଗ ଥରେ

ପକ୍ଷୀଙ୍କର କାକଳିରେ । ନିଷ୍ପାପ ଜହ୍ନକୁ
ଦେଖିବା ମାତ୍ରକେ ମନ ପୂର୍ଣ୍ଣ ବିଷାଦରେ ।
ଆଜି ମୁଁ ହାରିଛି, କିନ୍ତୁ ମୁଁ ବି ଆଜି ସୁଖୀ ।
ବର୍ତ୍ତମାନ ସଞ୍ଜବେଳ ଓ ଶୁଖିଲା ଘାସ ନାହିଁ ଆଉ ।
କିଏ ଜଣେ ମୋ ଦୁଆରେ ଠକ୍ ଠକ୍ କରେ,
କିଏ ଜଣେ—ପ୍ରେତ ପଛେ ହେଉ ।

ଏହାପରେ କଣ ? ନର୍କକୁଣ୍ଡ ? ନିଆଁରେ ପୋଡ଼ିବା ?
ମତେ କିଛି ଜଣାନାହିଁ, ଏତେ କୋଳାହଳ
ମୋ ଶିରା ଓ ପ୍ରଶିରାରେ ଯେ କିଛି ଜାଣିବା
ଅସମ୍ଭବ, ମୋର ଚଳାଚଳ
ଅସ୍ତିତ୍ୱକୁ ଆଲିଙ୍ଗନ କରି ଶାନ୍ତ ହଏ
ଦୋଦୋଶିଳା ଗ୍ରସ୍ତାମୂର୍ତ୍ତି ଏକ ।

୨

ମୁଁ ନିଜକୁ ପଚାରିଲି ମୁଁ କାହାକୁ ଭଲ ପାଏ ବୋଲି,
ଚେଷ୍ଟା କଲି ତା ଆକୃତି ମନେ ପକାଇବି,
ମନେ ପକାଇବି ତାର ଗ୍ରୀବା ତାର ମୁହଁ ତାର ହାତ,
ଗୋଛି ଗୋଛି କଳାବାଳ, କେବଳ ପାଇଲି
କିଛି ଶବ୍ଦ, ନାମ ନାନା ଅଙ୍ଗ ପ୍ରତ୍ୟଙ୍ଗର ।
ମନକୁ ମନ ମୁଁ ଖୁବ୍ ହସିଲି, କୌଣସି
ଆକୃତିର ବାସ୍ତବତା ନାହିଁ ମୋର କାମନା ବ୍ୟତୀତ ।

ମୋ କାମନାମାନଙ୍କର କୁହୁକ ମଧ୍ୟରେ
ସବୁ ସ୍ୱପ୍ନ ସତ୍ୟ ହୁଏ, ଯଦି ଯୌବନର
ସ୍ୱପ୍ନ ଦେଖେଁ ମୋ ଶିଥିଳ ଚମ ହୋଇଯାଏ
ଟାଣିଟୁଣି, ଯଦି ତାକୁ ଦେଖେଁ
ତା ହେଲେ ସେ ଅଚଳମ୍ବେ ଉପସ୍ଥିତ ହୁଏ ମୋ ସାମ୍ନାରେ
ସେହି ରୂପଧରି ଯେଉଁ ରୂପ ଇଚ୍ଛା ମୋର ।

କିନ୍ତୁ ସ୍ୱପ୍ନମାନେ ସତ୍ୟ ହେଉଥିଲା ବେଳେ
ମୁଁ ହଠାତ୍ ହତବୁଦ୍ଧି ହୁଏ, ସେମାନଙ୍କ କରାଳ ସତ୍ୟତା ।
ମତେ ମୂକ କରି ଦିଏ, ମୋ ସୃଷ୍ଟିର ଶରଣାଗତ,
ଯେଉଁଠି ଜନ୍ମମୃତ୍ୟୁ ଏକ ଏବଂ ଏକା ଭୂତ ଭବିଷ୍ୟତ ।

୩

ନିଜକୁ ଉଭରିବା ନିଜେ ସମ୍ଭବତଃ ଏହା
ନିଜର ଆକାଶେ ମେଘ, ଘଡ଼ଘଡ଼, ବିଜୁଳି ନିଜର
ଚତୁର୍ଦ୍ଦିଗେ ଅନ୍ଧକାର, ପ୍ରବଳ ବତାସ,
ଧୂଳି ଝଡ଼, ଚନ୍ଦ୍ର ନାହିଁ, ତାରା ନାହିଁ, ସବୁ
ରାସ୍ତା ଅବରୁଦ୍ଧ, ପାଖେ ପାଖେ ଯାହାର ନିଃଶ୍ୱାସ
ସେ ହେଲେ ପଛଟେ ହେଉ ପୂର୍ବ କାଲ୍ପନିକ
ସେ ମୋ ସାହାଭରସା ମୋ ଦେହ ଏବଂ ମନର ମାଲିକ ।

ମୁଁ ତାଙ୍କୁ ସମର୍ପେ ସବୁ,
ମୋ ଦେହର ଥଳକୂଳହୀନ
ବନ୍ୟାଜଳ, ସବୁ ସମ୍ଭାବନା,
ସବୁ କାନ୍ଦ, ନୀରବତା, ସବୁ ଉଚ୍ଚାରଣ ।
କିନ୍ତୁ ବିନିମୟ ମୋର ଲୋଡ଼ା ନାହିଁ,

ଏପରି କି ତା ନିଜ ରହିବା ।
ମତେ ଖୁବ୍ ଆନନ୍ଦିତ କରୁଅଛୁ
ବିଜୁଳିରେ ଆଲୋକିତ ଦୂର ପାହାଡ଼ର
ସୀମାରେଖା, ମୋର ପୃଷ୍ଠ ସ୍ତନ ଓ ଜଘନ,
ମୋ ପାଇଁ ତା ଆକାଶର ହାହାକାର ଏବଂ
ସୁଲୁସୁଲୁ ଦକ୍ଷିଣା ପବନ ।

# ମରିବାକୁ ଯାଉଥିବା ଲୋକ

ମରିବାକୁ ଯାଉଥିବା ଲୋକ
ପର୍ବତ ଦେଖିଲାବେଳେ ଚେଷ୍ଟା କରେ
ଝୁମ୍ପି ନ ହେବାକୁ,
ଆକାଶ ଯଦିବା ପଡ଼େ ଆଖିରେ ସେ
ଫେରାଏ ଆଖିକୁ,
ସପ୍ତାକଡ଼ଗଛଙ୍କର ପେନ୍ଥା ପେନ୍ଥା ଫୁଲ
ଦେଖି ନ ଦେଖିଲା ପରି ରହେ,
ସେ ଅନ୍ୟମନସ୍କ ହବଶେ ଯେହେତୁ ମରିବା
ଆଗୁଁ ତାର ଦୃଷ୍ଟି ନଷ୍ଟ ହୁଏ ।

ମରିବାକୁ ଯାଉଥିବା ଲୋକ
କିଛି ଭାବିପାରେ ନାହିଁ, ସବୁ ଚିନ୍ତା ତାର
ଉଦ୍ଭବ ମସ୍ତକେ ଭାଙ୍ଗି ଗୁଳୁଡ଼ା ଗୁଳୁଡ଼ା
ହୋଇ ଯାନ୍ତି, କେଉଁ ଘଟଣାର
ଆଦ୍ୟଠାରୁ ଅନ୍ତ ଯାଏଁ ଭାବିବା ନିମିତ୍ତ
ମରିବାକୁ ଯାଉଥିବା ଲୋକ ଅସମର୍ଥ ।

କି ଶକ୍ତି ଚଳାଏ ତାକୁ ?
ସ୍ନେହ ନୁହେଁ, ଉତ୍ସାହ ବି ନୁହେଁ ।
ଏହିପରି କିଛି ଭାବ ଉଦ୍ଦେଶ୍ୟବିହୀନ

ଘବେ ଯାହା ସ୍ୱପ୍ନଂ ଗୃଲୁଥାଏ
ଏକ୍ସ ପରି କଛୁ ଯାର ଏକ ସମୟରେ
ଶକ୍ତ ଥିଲ ପ୍ରତକ୍ରିୟା ଥିଲ
ଏବଂ ତା ଜୀବନୀଶକ୍ତ ଘଟଣାଚକ୍ରରେ
ଆସ୍ତେ ଆସ୍ତେ ଶେଷ ହୋଇଗଲା ।
ଏକ୍ସପରି କଛୁ ହେବ
ମରିବାକୁ ଯାଉଥିବା ଲୋକର ସନ୍ତୁଶ,
ଗଡ଼ାଣି ରାସ୍ତାରେ ଏକ ଗ୍ଳକବସ୍ଥାନ
ଗାଡ଼ିପରି ଅଟେ ତାର ବଳକା ଆୟୁଷ ।

# ଅଭ୍ୟାସ

ମତେ ଡରାଇବା କଣ ଦରକାର ଥିଲା ? ଦୁଇଦିନ
ଦୁଇରାତି ମୁଁ କେବଳ ଚିତ୍କାର କଲି ତୋ
ଭୟାନକ ରୂପ ଦେଖି, ସତେ କି ଗୋଟିଏ
ଅବିଚ୍ଛିନ୍ନ ଚିତ୍କାରରେ ପରିଣତ ହେଲା ମୋ ଜୀବନ ।
ଦେହରେ ପ୍ରଖର ତାତି, ଆଖି ବନ୍ଦ କଲେ
ଲାଗିଲା ଯେ ଭୁ ଟାଣୁଛି କେଉଁ ଅତଳକୁ
ଯେଉଁଠି ବୈଶିଷ୍ଟ୍ୟହୀନ ବାଲିପୂର ନିର୍ଦ୍ଦୟ ଅନ୍ଧାର
ନାଆଁ ଗାଆଁ ପରିଚୟ ଚେହେରାର ପାର୍ଥକ୍ୟ ଇତ୍ୟାଦି
ପୋଛିଦିଏ, କାନ୍ଦି କାନ୍ଦି ଛୁଆମାନଙ୍କର

ଲୁହ ଡବ୍ ଡବ୍ ଆଖି ଆକାଶରେ ଦିଶେ ।
ଆକାଶରେ କେତେମେଘ, ବର୍ଷିବାକୁ ଯାଉଥିବା ମେଘ ।
ଆହୁରି ଦିଶୁଛି ଗଛ ଡାଳଙ୍କ ଜାଗାରେ
ଚୂଡ଼ଶୂନ୍ୟ ଲମ୍ବା ଲମ୍ବା ହାତ, ସେ ହାତ ଦୋହଲେ
ପବନରେ, ସେ ହାତ ଆଙ୍ଗୁଠି ଭିତରେ
ପବନ ବୋହିବା ବେଳେ ହାହାକାର ଶୁଭେ
କହୁଛନ୍ତି—ଚତୁର୍ଦ୍ଦିଗ ପ୍ରତ୍ୟେ-ତା ଉପରେ ।

ଡର ଖୁବ୍ ଲାଗିଲା ଓ ରାଗ ବି ଲାଗିଲା ।
ମୁଁ କଅଣ ଭେଟିବି ମୋର ଭବିଷ୍ୟତ ଆଚମ୍ବିତ ଭାବେ ?
ମୋ ନିଜର ନଗଣ୍ୟତା ବାରମ୍ବାର କାହିଁକି ମନକୁ
ଜର୍ଜ୍ଜରିତ କରୁଥିବ ? କାହିଁକି ମୋ ଅସାମର୍ଥ୍ୟ ସବୁ

ନାନାଦି ବଭଙ୍ଗ ରୂପ ଧରି ମତେ ଟାପ୍‌ସି କରିବେ ?
ମୁଁ ଅସାଧାରଣ କମ୍ବା ବଡ଼ ହେବାଲାଗି
ଇଚ୍ଛା କରିନାହିଁ, ଖୋଜନାହିଁ କୌଣସି ରହସ୍ୟ,
ଏହି ଶ୍ରେଷ୍ଠ ସହରର ରାସ୍ତାରେ ମୁଁ ହଜାର ହଜାର
ଲୋକଙ୍କ ଭିତରେ ଚାଲେଁ, ଚାଲୁଁ ଚାଲୁଁ ଦିନେ ହାସ୍ପାତାଳ
ଖଟିଆରେ ଶୋଇପଡ଼ି ସକାଳ ପାହିଲେ
ଆଉ ନ ଚାଲିବା ଏକମାତ୍ର ଅଭିଳାଷ ।

ଏତକ ବି ମିଳିଲାନି, ଲୋକ ଗହଳିରୁ
ମତେ ହିଁ ଓଟାରି ନେଇ ଦିଆଗଲା ଏତେ ଶାସ୍ତି ମୋର
କ୍ଷୁଦ୍ରାଦପି କ୍ଷୁଦ୍ର ଆତ୍ମା ଯାହାକୁ ସହିବା
ବଡ଼ କଷ୍ଟକର ।

ମୁଁ ଶୁଣିଲି ମୁଁ ତୃତୀୟ ଦିନ ମୃତପୂର
ସୁସ୍ଥ ହୋଇ ଯାଇଥିଲି । ପ୍ରକୃତ ପକ୍ଷେ ମୁଁ
ଦୁଇଦିନ ପରେ ମୁଣ୍ଡ ତଳକୁ ଓ ଗୋଡ଼ ଉପରକୁ
ହୋଇ ଝୁଲି ରହିବାରେ ଅଭ୍ୟସ୍ତ ହେଲି, ମୋ
ଅଙ୍ଗପ୍ରତ୍ୟଙ୍ଗରେ ଆଉ ହଲ୍‌ଚଲ୍ ନ ଥିଲା, ମୁହଁର
ରଙ୍ଗଥିଲା କାଦୁଅର ରଙ୍ଗ,
ମତେ ଦେଖି ସମ୍ଭବତଃ ଅନ୍ୟମାନଙ୍କର
ପଥଶ୍ରମ କମୁଥିଲା, ଦାର୍ଶନିକ ଭାବାପନ୍ନ ଲୋକେ
କହିଲେ ଓଲଟ ବୃକ୍ଷ ପରି ଦେଖ ଅଟେ ଏ ସଂସାର ।
ମର୍ତ୍ତ୍ୟରେ ମାୟାର ଡାଳ, ମହାଶୂନ୍ୟେ ଲଟକଛୁ ଚେର ।

ମୁଁ ଖୁବ୍ ଚିଡ଼ିଲି, କିନ୍ତୁ ତୃତୀୟ ଦିନ ମୁଁ
ବୁଝିଲି ଏହା ମୋ ଭାଗ୍ୟ, ଏପରି ଝୁଲିବା
ଅଚଳ ଉପରେ, ଏବଂ ମୁକ୍ତାର ଦସ୍ତାରେ
ଅବଶିଷ୍ଟ ଜୀବନ ଜୀଇଁବା ।

# ଧୀବର

ସମୁଦ୍ରକୁ ବର୍ତ୍ତମାନ ମୁକ୍ତ କରିବାର
ବେଳ ଆସିଲାଣି, ଯେହେତୁ ସମୁଦ୍ର
ଅମୃତ ଓ ହଳାହଳ ଉଭୟ ରଖିଛି, ଉଭୟେ ଦେହକୁ
ହଲଚଲ୍ ହେବା ଲାଗି କ୍ଷମତା ଦିଅନ୍ତି ।
ହଲ୍‌ଚଲ୍ ହେବା ମାନେ ଜୀବନରେ ଥିବା, ଆମେ ବର୍ତ୍ତମାନ
ଜୀବନରେ ଅଛୁଁ ବୋଲି ପ୍ରମାଣ ଖୋଜୁଛୁଁ,
ଆମେ ଭାବୁଛୁଁ ଯେ ସମୁଦ୍ରରୁ ଫେରିଲାବେଳକୁ
ଆମର ଦେହରେ ନୂଆ ପରାକ୍ରମ ଥିବ
ଥିବ ପୁନର୍ଜ୍ଜୀବନର ସ୍ପଷ୍ଟ ନିଦର୍ଶନ ।

ସମୁଦ୍ର ଗର୍ଜିଲାବେଳେ ପ୍ରତି ହୃଦୟରେ
ଆତଙ୍କ ଉପୁଜେ, ଅନ୍ତତଃ ଏତିକି
ସମୁଦ୍ରର ଭଲଗୁଣ-ବନା ବାଛିବାଛୁରରେ ନିର୍ଦ୍ଦୟ ହେବା ଓ
ସଭିଙ୍କୁ ଡରାଇଦେବା ସମାନଭାବରେ ।
ଯାହାଙ୍କର ପିତାମାତା ଆଜୀବନ ଭରଣପୋଷଣ
ଧନ୍ଦାରେ ସନ୍ତୁଳ ହେଲେ ଏବଂ ଯାହାଙ୍କର
ଧାରଣା ଯେ ତାଙ୍କରକ୍ତ ନୀଳବର୍ଣ୍ଣ ଅଟେ,
ସମସ୍ତେ ସମାନଭାବେ ଆତଙ୍କିତ । ସମୁଦ୍ର ଆମକୁ
ଯଦି ଧ୍ୱଂସ କରିଦିଏ ତାହେଲେ ବି ଆମେ ଶ୍ରେଷ୍ଠଲୋକ
ବୋଲି ସେ ଭାବିବ ନାହିଁ, ଆମ ପିଲାକବିଲାଙ୍କ ପାଇଁ
କେତେବଡ଼ ଏ କଥା ଠିକ !

ଅନେକଙ୍କୁ ଧ୍ୱଂସ କଲା
ଏ ସମୁଦ୍ର, ତାର ଅନଶ୍ଚିତ
ସ୍ରୋତକୁ ଅପେକ୍ଷା କରି ଭାଙ୍ଗିଗଲା ଅନେକ ଜୀବନ
କାହିଁ କେଉଁ ଅଚଳକୁ ଓଟାରି ନିଏ ତା
ଆବର୍ଗତ ପ୍ରସାରିତ ହାତ,
ସେଠାରେ କେବଳ ଶୁଭେ
ସ୍ତବ୍‌ଧତାର ଦୀର୍ଘଶ୍ୱାସ, ସେଠିକା କାନ୍ଥରେ
କେତେ ପ୍ରତିକୃତି, ସବୁ ପ୍ରତିକୃତି ପ୍ରାଗୈତିହାସିକ
ଗାଢ଼ କଳା ରଙ୍ଗେ ଉଦ୍‌ଭାସିତ

ଏତିକି ଶୋଚନା ଆଜି
ଯେଉଁମାନେ ରହିଗଲେ ତାଙ୍କର ମୂର୍ଚ୍ଛା
ହେବେ ଅବିବେକୀ ଲୋକେ, ଯେଉଁମାନେ ଚମକି ନିଦରୁ
ଉଠନ୍ତିନ, ମୁଣ୍ଡ ବାଡ଼ାନ୍ତିନ
ଯଦିଓ ଅନେକ କଥା ବଦିଗିଡ଼ଗଲା ଓ
ଯଦିଓ ରୋଗିଣା ପିଲା କଳେ କଳେ ଦୁଧଖାଇ ତାଙ୍କ ଥନରୁ
ଶୋଇଗଲେ, ସକାଳ ପାହିଲେ
ଆଉ ଖାଦ୍ୟ ମିଳିବନି ପୃଥିବୀରୁ କିମ୍ବା ଆକାଶରୁ ।

ମହାପ୍ରଭୁ, ଯଦି ତମେ ଇଚ୍ଛାକର ସମୁଦ୍ର ଫେରାଉ
ଆମକୁ ତାହେଲେ ତମ ଇଚ୍ଛା ପୂର୍ଣ୍ଣ ହେଉ
କୁଆଁ କାଁ କରିବା ପୂର୍ବରୁ,
ମାଗଣାରେ ମିଳିଥିବା ଗଦାଗଦା ଖବର କାଗଜ
ଜାଳି ସଜା ହୋଇଥିବା ଚିତାଗ୍ନିରେ
ପିଲାମାନେ ଶୋଇବା ଆଗରୁ

## ଚନ୍ଦ୍ର ପ୍ରତିମା

କାନ୍ଥରେ ହଠାତ୍
ଉଜ୍ଜ୍ୱଳ ଆଲୋକ କିଛି ଦେଖାଗଲା ଯେବେ
କୃଷ୍ଣକାୟ ସ୍ତମ୍ଭପରି ମୁଁ ଘରକୁ ପଶିଲି; ଘରର
ନାନାବିଧ କୋଣରେ ନାନା ଧ୍ୱଂସାବଶେଷ ଓ
କେତେ ଯେ ବକ୍ତବ୍ୟ କେତେ ସ୍ମୃତି ପ୍ରତ୍ୟେକର !
ଆସ୍ତେ ଆସ୍ତେ ସେ ଆଲୋକ ପରିଣତ ହେଲା
ହାଡ଼ୁଆ ମୁହଁରେ, ତାହା ଥରେ ବହୁଦୂରରେ,
ପୁଣି ଥରେ ନିକଟରେ, କାନପାଖେ ଫୁସ୍ ଫୁସ୍ କରି
କହୁଛି ସେ ଦେଖ ଦେଖ ଋତୁ ବଦଳିଲା
ଆହୁରି ଅନେକ କଥା ଅବୋଧ ଭାଷାରେ ।

ଅତର୍କିତ ଆକ୍ରମଣ
ଝରକାର ସେପାଖରୁ ମଲ୍ଲୀଫୁଲ ବାସ୍ନାର ଓ ଏକ
ଭଙ୍ଗାରୁଜା ସହରର ଦୁଗ୍ଧଫେନନିଭ ଶୈଶବର,
ବହୁଦିନୁଁ ହଜିଥିବା ଅନ୍ତରଙ୍ଗତାର,
ଫେରିବାର ପାଦଚିହ୍ନ ଓଦାବାଲି ଉପରେ ଥରେ, ଓ
କେଉଁ ଏକ ଶତାବ୍ଦୀର କେଉଁ ଏକ ମୁହୂର୍ତ୍ତରେ
କେଉଁ ଏକ ଅରଣ୍ୟରେ ଶୁଣାଯାଏ
କେଉଁ ଏକ ସନ୍ନ୍ୟାସୀର ସ୍ୱର ।

## ତମ ଭାଗ୍ୟ

ମୃତ୍ୟୁ ବୋଲି ତମେ ନେଲ ଅଭିଶାପ, ତେଣୁ
ମରିବା ଆରମ୍ଭ କଲି, ପୋଡ଼ିଗଲା ଚର୍ମ
କଳା ଦେଖାଗଲା ଦେହ, ତମ ଢିଲା ହେଲା,
ତମର ହାତର ଏକ ଇଙ୍ଗିତରେ ବାସୀ ଫୁଲପରି
ମୋ ଦେହରୁ ମାଂସ ଝଡ଼ିଗଲା ।
ତମ ଦାନ୍ତ କୁଣ୍ଡ କଳାପାଚ ପରି ବୁଦା ଉହାଡ଼ରେ
ଲୁଚି କରି ଚୁମ୍ବିଥିଲ ମୋ ଖାଲି ପାଦକୁ,
ତମ ଶବ୍ଦମାନେ ଛପି ପଥର ପଛରେ
ଆତତାୟୀ ପରି ଜଗିଥିଲେ,
ଦୁଆର ଅନ୍ଦର କଳା ରଙ୍ଗ ଦେଖାଗଲା
ତମର ପ୍ରେତାତ୍ମା ଏବଂ ବୁଷ୍ଟିକ ରୂପରେ,
ହଠାତ୍ ନିଶ୍ଚିହ୍ନ ଏକ ସଡ଼କ ଭାବରେ ।

ଡର ମାଡ଼ିଲାନି, ଡର କାହାକୁ ? କାହିଁକି ?
ପିଲାଦିନୁଁ ଜାଣିଛି ଯେ ଦିନେ ନା ଦିନେ ଏ
ଜୀବନର ଲୀଳା ଖେଳା ସରିଯିବ । ଶୋଚନା ଏତିକି
ତମରି ମୁହଁରେ ଏବଂ ତମର ଇଚ୍ଛାରେ
ମୃତ୍ୟୁ ହେଲା ସାକାର । ତମେ ତ
ସନ୍ତୁ ଦୀପଶିଖାଟିଏ ପରି ଥିଲ ସୁନ୍ଦର, ନିର୍ମଳ,
ମୁଁ ତ ଛୁଡ଼ା ହେଇଥିଲି ପବନ ଓ ତମର ହାତରେ,
ଜାଣେ ତମେ ଲିଭିଯିବ ତେଣୁ ମୋ ନିଃଶ୍ୱାସ
ରୁନ୍ଧି ଥିଲି କେଡ଼େ ଉଚ୍ଛ୍ୱାସରେ !

ଅନ୍ୟ ଏକ ନାଗକୁ ମୁଁ
ଚାହିଁଥିଲି ବନ୍ଧୁବାନ ଚଳେ
(ଆଜି କାଲି ଯେ ରହୁଛି ଫଟୋରେ), ତା ପାଦଧ୍ୱନି
ଏବେ ମଧ୍ୟ ଶୁଭେ ବେଳେ ବେଳେ
ଏବେ ମଧ୍ୟ ଶୁଭେ ତା'ର ଖିଲ୍ ଖିଲ୍ ହସ ।
ସେ କଥା କହୁଥିଲାବେଳେ ଯୋଗିନୀ ଡାକିନୀ
ଦେଖାଯାନ୍ତି ଅପ୍‌ସରା ରୂପରେ,
ଆମ୍ବା ହୁଏ ସ୍ଥିର, ଯେଉଁପରି ଦୂରର ପର୍ବତ
ଦେଖାଯାଏ ବୁଡ଼ିଥିବା ଜହ୍ନ ଆଲୁଅରେ ।
ବଡାସ ଅନେକ ଥର ଆସେ, ପ୍ରତିଥର
ପଦ୍ମଫୁଲ ବାସ୍ନା ନେଇ ଫେରେ ।

ଜହ୍ନର ବୁଡ଼ିବା ଏବଂ ସୂର୍ଯ୍ୟର ଉଇଁବା,
ସୂର୍ଯ୍ୟର ବୁଡ଼ିବା ସବୁ ଦେଖିବାକୁ ଶିଖିଲି ମନରେ
ବିଷାଦ ନ ରଖି, ଶିଖିଲି ମୁଁ ନିଜକୁ ସାମିଲ୍
କରି ଦେବା ଲାଗି ତାରମାନଙ୍କ ସାଙ୍ଗରେ ।

ତମ ଅଭିଶାପ ଆଜି ସତ ହେଲା ବେଳେ
ଡର ନୁହେଁ, ଦୁଃଖ ଲାଗେ ଖାଲି ।
ଗୋଟିଏ ଫଟୋର ଛବି ଜୀବନକୁ ଫେରି ଆସେ, କିନ୍ତୁ
ଜୀଅନ୍ତା ମଣିଷଟିଏ ପରିଣତ ହୁଏ ଦୁଃସ୍ୱପ୍ନରେ,
ଅବଳମ୍ବ, ସକାଳର ଆଲୋକକୁ ଦେଖି
ତାହା ଲୁଚେ ଶୂନ୍ୟଗର୍ଭ ଅନ୍ଧାର ଭିତରେ ।

# ଯେଉଁ ବାଟ

ଏଇ ରୁଖିଆ ପରେ
ତମେ ଯିବ ତମର ଘରକୁ
ମୁଣ୍ଡରେ ଓଢ଼ଣା, ଦେହ ଘୋଷାଡ଼ି ଘୋଷାଡ଼ି
ମା ଏବଂ ଜେଜେମା ହେବାକୁ ।

ଏଇ ରୁଖିଆ ପରେ
ମୁଁ ଫେରିବି ମୋ କାର୍ଯ୍ୟାଳୟକୁ,
ନଥିରେ ଲେଖିବି କେତେ ନିର୍ଦ୍ଦେଶ ଯାହାର
ଶକ୍ତି ନାହିଁ କୌଣସି କଥାକୁ
ବଦଳାଇ ଦେବା ଲାଗି, ଯାହା ବଦଳୁଛି
ଅବରୋଧ କରିବାକୁ ତାକୁ ।

ଏଇ ଜୀବନଟି ପରେ
ମୋ ଫୁସ୍‌ଫୁସ୍‌ରେ ଥିବା କର୍କଟ ରୋଗରେ
ମୋ ଦେହାନ୍ତ ହୋଇଯିବା ପରେ,
ତାର କିଛି ଦିନ ଆଗୁଁ ଅଥବା ଉପରେ
ତମେ ଆଖି ବୁଜିଦେବା ପରେ

ଅନ୍ଧାର ସମୁଦ୍ର ଥିବ, ଆମେ ତା ଭିତରେ
ଛୋଟ ଛୋଟ ମାଛପରି କାହିଁ କେଉଁଠାରେ
ରହିଥିବା, ସମୁଦ୍ରର ମୁଁ ଥିବା ଜାଗାରେ

ତମର ସୌନ୍ଦର୍ଯ୍ୟ ଯଦ୍ଧ ପୁଣି ଦୃଶ୍ୟ ହେବ
କଳାକଳା କାନ୍ଥମାନେ ତମେ ଥିବାଠାରେ
ଭୂଷୁଡ଼ି ପଡ଼ିବେ, ଆଲ୍‌କାତରାର
ଜୁଆରରେ ମୋ ସ୍ମରଣ ଶକ୍ତି ଭସିଯାଇ
ଲିଭିଯିବ ବିଚ୍ଛେଦର ଦୂରତମ ସୀମାନ୍ତ ଗାଆଁରେ ।

ଏଇ ଚୁଷିଆ ପରେ,
ଏଇ ଜୀବନଟି ପରେ
ପୃଥିବୀର ବଙ୍କାତଙ୍କା ରାସ୍ତାରେ ଓ ଅସ୍ନା ବାସଗୃହ
କୋଟି କୋଟି ଲୋକଙ୍କର ଚୁଲ୍‌ବୁଲ୍
ଜୀଇଁବା ଓ ମରିବା ଉପରେ
କଣ ଶୁଭେ ? କଣ ଦେଖାଯାଏ ?
ଘଟିଥିବା ଦୁଃଖାତ୍ମକ ନାଟକର ଅନ୍ତିମ ଦୃଶ୍ୟରେ
ହସେ ହୁସେଇନଙ୍କର କଥାବାର୍ତ୍ତା, ପୁଣି ଅସମ୍ଭବ
ଶରତ ଋତୁର ଭୋର୍ ବେଳେ ଏକ ଲୁହ ସୁଡ଼ୁବୁଡ଼ୁ
ନୀଳ କଇଁଫୁଲଟିଏ ପୋଖରୀ ଭିତରେ ।

# ପୃଷ୍ଠବନ୍ଧ

## ୧

କେତେକ ଲେଖକଙ୍କ ମତରେ ଏପରି ଏକ ଗୁରୁତର ସମସ୍ୟା ବର୍ତ୍ତମାନ ଉପୁଜିଛି ଯେ ତଦ୍ଦ୍ୱାରା ସାହିତ୍ୟର ଭବିଷ୍ୟତ ବିପନ୍ନ ହୋଇପଡ଼ୁଛି । ଅଧିକରୁ ଅଧିକ ଲେଖକ ସେମାନଙ୍କ ଓ ପାଠକମାନଙ୍କ ଭିତରେ ଯଥେଷ୍ଟ ସମ୍ପର୍କ ରହିପାରୁ ନାହିଁ ବୋଲି କ୍ଷୋଭ ପ୍ରକାଶ କରୁଛନ୍ତି ଏବଂ ଆଧୁନିକ ସାହିତ୍ୟ, ବିଶେଷତଃ ଆଧୁନିକ କବିତା ପ୍ରତି ସମାଜରେ ଆଗ୍ରହର ଅଭାବ ଏକ ଦୁଃଖଦାୟକ ପରିସ୍ଥିତି ବୋଲି କହୁଛନ୍ତି । ଏ ସମସ୍ୟା ସବୁକାଳେ ଲେଖକମାନେ ଉପଲବ୍ଧି କରିଛନ୍ତି, ସବୁକାଳେ ସେମାନେ ନିଜ ନିଜର ରଚନାକୁ ଅଜ୍ଞତା ଓ ଉଦାସୀନତାର ତମିସ୍ରା ଭିତରେ ସାହସର ସହିତ ଅଗ୍ରସର ହେଉଥିବା ନିଷ୍ପାପ ଓ ସୁନ୍ଦର ବାଳକାଟିଏ ବୋଲି ଭାବି ଆସିଛନ୍ତି । କିନ୍ତୁ ପୂର୍ବକାଳେ ଲେଖକମାନେ ସାହିତ୍ୟ ସୃଷ୍ଟିକୁ ନିଜେ ନିଜର ସାର୍ଥକତା ବୋଲି ମନେ କରୁଥିଲେ ଏବଂ ସର୍ବସାଧାରଣରେ ତାହା କେତେ ଆଦୃତ ହେଲା ସେ ବିଷୟରେ ବିଶେଷ ବିଚଳିତ ହେଉ ନ ଥିଲେ । ଜନତାର ବାହାବା ଲୋଡ଼ିବାର ମନୋବୃତ୍ତି ସେମାନଙ୍କର ନ ଥିଲା ଏବଂ ସେମାନଙ୍କ ସୃଷ୍ଟିର ମାନଦଣ୍ଡ ଥିଲା ଗୋଟିଏ ବିରଳ, ଏପରି କି ଅନାଗତ ରୁଚିର ମାନଦଣ୍ଡ * ।

* ଯେ ନାମ କେଚିଦିହ ନଃ ପ୍ରଥୟନ୍ତ୍ୟବଜ୍ଞାଂ
ଜାନନ୍ତି ତେ କିମପି ତାନ୍ ପ୍ରତି ନୈଷ ଯତ୍ନଃ
ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା
କାଲୋହ୍ୟୟଂ ନିରବଧି ବିପୁଳା ଚ ପୃଥ୍ୱୀ ଭବଭୂତି

(ଏଠାରେ କେହି କେହି ଆମକୁ—ଅର୍ଥାତ୍ ଏ କାବ୍ୟକୁ—ତାଚ୍ଛଲ୍ୟ କରୁଛନ୍ତି । ସେମାନେ ବୁଝିପାରୁ ନାହାନ୍ତି ଯେ ଏ ପ୍ରଚେଷ୍ଟା ତାଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଅନନ୍ତକାଳ ଏବଂ ଏହି ବିସ୍ତୀର୍ଣ୍ଣ ପୃଥିବୀରେ ମୋର ରୁଚି ଏବଂ ଆବେଦନ ପ୍ରତି ସମ୍ବେଦନଶୀଳ କେହି ନା କେହି ତ ଥିବେ ! ନ ଥିଲେ ସେ ଦିନେ ନା ଦିନେ ତ ଜନ୍ମ ହେବେ ! )

ପରବର୍ତ୍ତୀ କାଳରେ ଲେଖକମାନେ ଏକ ବୃହତ୍ତର ଗୋଷ୍ଠୀର ତାରିଫ୍ ଲୋଡ଼ି ବସିଲେ ଏବଂ ତାହା ନ ମିଳିଲା ବେଳେ ଲୋକଙ୍କୁ ତୀବ୍ର ସମାଲୋଚନା କରି ବସିଲେ । ସେମାନଙ୍କ ସାହିତ୍ୟ-କୃତି ପଛରେ ଏକ ଈପ୍ସିତ ପ୍ରତିକ୍ରିୟା ଅଙ୍ଗାଙ୍ଗୀ ଭାବେ ଜଡ଼ିତ; ଅନ୍ୟ ଭାଷାରେ କହିଲେ ସେ କୃତି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ପ୍ରତି ଉଦ୍ଦିଷ୍ଟ, ସେ ଗୋଷ୍ଠୀର ରୁଚି ଓ ସ୍ପୃହା ଦ୍ୱାରା ନିୟନ୍ତ୍ରିତ । ବ୍ୟକ୍ତିଗତ ଆବେଗର, ସମାଜଠାରୁ ବିଂଚ୍ଛିର କଷ୍ଟଦାୟକ ବିଚ୍ଛିନ୍ନତାର ଅନାବିଳ ପରିପ୍ରକାଶ ଇତ୍ୟାଦି ଯେଉଁ ଗୁଣ ଆଧୁନିକ ସାହିତ୍ୟଠାରେ ଆରୋପ କରାଯାଏ, ଏ ପରିପ୍ରେକ୍ଷୀରେ ଦେଖିଲେ ତାହା ଅପୌକ୍ତିକ ମନେହୁଏ । ଯେଉଁ ବିଚ୍ଛିନ୍ନତା ଅନେକ ଆଧୁନିକ ସାହିତ୍ୟରେ ପ୍ରକଟିତ,ତାହା ପାଖବଖରାରେ ଲୁଚିକରି ବସିଥିବା ଶିଶୁର ବିଚ୍ଛିନ୍ନତା । ସେ ଆଶା କରି ବସିଥାଏ ଯେ ଅବିଳମ୍ବେ ତାର ମାଆ ତାକୁ ଖୋଜି ଖୋଜି ସେଠି ପହଞ୍ଚିବ ଏବଂ ବୁଝାଇ ସୁଝାଇ, ଗେଲ କରି ଖାଇବାକୁ ଡାକି ନେବ । ସେ ଘର ଛାଡ଼ି ବାହାରକୁ ଯାଏ ନାହିଁ ଏବଂ ଆଉ ଗୋଟିଏ ବଖରାରେ ରହିବାର ସାମୟିକ ବିଚ୍ଛିନ୍ନତା ହିଁ ତାର ଏକମାତ୍ର ବିଚ୍ଛିନ୍ନତା ।

ପ୍ରକୃତ ପକ୍ଷେ ଆଜିର ସାହିତ୍ୟିକ ତାର ପରିବେଶକୁ ଖୁବ୍ ବେଶି ଭଲପାଏ, ତା ଉପରେ ଖୁବ୍ ବେଶି ନିର୍ଭର କରେ । ସେ ଏ ପରିବେଶରୁ ଯାହା ପାଇବାକୁ ଆଶା କରେ ତାହା ନ ପାଇଲେ ହତାଶ ଓ ବିରକ୍ତ ହୁଏ । ମନୁଷ୍ୟର ଅନ୍ତରର ଅପରିଷ୍କୃତ ଭାବାବେଗର ପ୍ରକାଶ ପରିବର୍ତ୍ତେ ସାଫଲ୍ୟ ଅର୍ଜନ ଆଜି ତାର ଉଦ୍ଦେଶ୍ୟ ହୋଇପଡ଼ିଛି । ଏ ସାଫଲ୍ୟର ଫଳ ହେଉଛି ସ୍ୱୀକୃତି, ନିଜର ଅଦ୍ୱିତୀୟ ଶୈଳୀ ଓ ମହାର୍ଘ ଜୀବନ-ଦର୍ଶନକୁ ତାରିଫ୍ କରୁଥିବା ଲୋକଙ୍କ ଗହଳି ।

କୌଣସି କଳା-ସୃଷ୍ଟିର ଆଦର ଯେ ସୀମିତ ହେବ ଏକଥା ମୂଳରୁ ବୁଝିନେବା ବାଞ୍ଛନୀୟ । ଏହା ସବୁକାଳେ ସୀମିତ ଥିଲା ଏବଂ ଆମ ଜୀବଦ୍ଦଶାରେ ଯେ ପରିସ୍ଥିତି ବଦଳିଯିବ, ଏ କଥା ଭାବିବା ଉଚିତ ନୁହେଁ । ଯଦି ଆମଠାରୁ ଖୁବ୍ ବଡ଼ ବଡ଼ ଲେଖକମାନେ ଅତି ସୀମିତ ଆଦରରେ ସନ୍ତୁଷ୍ଟ ହୋଇଥିଲେ, ଆମ ପକ୍ଷରେ ଏକ ବିପୁଳ ଜନସମର୍ଥନ ଅପରିହାର୍ଯ୍ୟ ହୋଇ ପଡ଼ିବ କାହିଁକି ? ଆମେ ଲେଖୁଛୁ—ଯେହେତୁ

ଆମେ ଲେଖିବା ବନ୍ଦ କରିପାରୁ ନାହୁଁ, ଜନସମର୍ଥନ ପାଇବା ପାଇଁ ନୁହେଁ । ଯଦି ଲୋକସମର୍ଥନ ସଂଗଠିତ କରିବା ଲେଖକର ଦାୟିତ୍ୱ ହୁଏ, ସେ ଦାୟିତ୍ୱ ତୁଲାଇବା ପାଇଁ ନିଜର କାବ୍ୟମାନସକୁ ତଳକୁ ଓହ୍ଲାଇ ଆଣିବାକୁ ପଡ଼ିବ, ଲୋକମତ ସଂଗଠନର କାଇଦା ପାଖରେ ଆତ୍ମସମର୍ପଣ କରିବାକୁ ପଡ଼ିବ ।

ଏ ଆତ୍ମସମର୍ପଣରେ ଅନ୍ତର୍ନିହିତ ଅସହାୟତା ଅତ୍ୟନ୍ତ ଦୁଃଖଦାୟକ । ଯେଉଁ ମାଧ୍ୟମରେ ଲୋକମତ ପ୍ରକାଶିତ ହୁଏ ବା ନିୟନ୍ତ୍ରିତ ହୁଏ, ତାହା ସାଧାରଣତଃ ଏପରି ଲୋକଙ୍କ ହାତରେ ଥାଏ, ଯେଉଁମାନଙ୍କ ପାଖରେ ସୁରୁଚି ଅପେକ୍ଷା ଜାଗତିକ କୃତିତ୍ୱ ବେଶି ଗୁରୁତ୍ୱପୂର୍ଣ୍ଣ । ସେମାନେ ନିଜ ସାହାଯ୍ୟର ଓ ପୃଷ୍ଠପୋଷକତାର ମୂଲ୍ୟ ଅବଶ୍ୟ ଧାର୍ଯ୍ୟ କରିବେ ଏବଂ ସେ ମୂଲ୍ୟ ହେଉଛି ସେମାନଙ୍କ ଉଦ୍ଦେଶ୍ୟ ପ୍ରତି ପୂର୍ଣ୍ଣ ଆନୁଗତ୍ୟ । ଏ ଆନୁଗତ୍ୟର ମୂଳ ସ୍ୱରୂପ ନିଜର କଳ୍ପନାଶକ୍ତି ଓ ଭାଷା ପ୍ରୟୋଗର ସାମର୍ଥ୍ୟକୁ ଏପରି ଉଦ୍ଦେଶ୍ୟରେ ବିନିଯୋଗ କରିବାକୁ ହେବ ଯାହା ନିଜର ରୁଚି ଓ କାବ୍ୟାଦର୍ଶର ବିରୋଧାତ୍ମକ । ଥରେ ପ୍ରଚାର-କୌଶଳ ସହିତ ସଂଶ୍ଳିଷ୍ଟ ହୋଇଗଲେ ତାର ଅତ୍ୟାଚାରରୁ ମୁକୁଳିବା କଷ୍ଟକର । ସେ ଅତ୍ୟାଚାର ଏଡ଼େ ଖରାପ ଯେ ଚୂପ୍‌ଚାପ ନିଜ ମନର ଆନ୍ଦୋଳନକୁ ମୁକାବିଲା କରୁଥିବା କବି ଶସ୍ତା ମନୋହାରୀ ଜନଖିଆ ପ୍ରଗଳ୍ଭ ବୁଲିବିକାଳୀ ପାଲଟିଯାଏ, କୁରୁଚିର ଉପାସନାରେ ନିଜର ଆତ୍ମାକୁ ହଜାଇ ଦିଏ । ଯେଉଁମାନେ ଏକଦା ଲେଖକ ଥିଲେ ସେମାନେ ଭିକାରୀଙ୍କ ପରି ଧାଡ଼ି ଧାଡ଼ି ହୋଇ ବସିଥିବା ଏବଂ ବାଟରେ ଯାଉଥିବା ସ୍ୱଚ୍ଛଳ ବ୍ୟକ୍ତିମାନଙ୍କର ସ୍ତୁତିଗାନରେ ପରସ୍ପରର ପ୍ରତିଯୋଗିତା କରୁଥିବା ଦୃଶ୍ୟ କେଡ଼େ ହୃଦୟବିଦାରକ ! ସେମାନେ ଆଉ ପ୍ରଶ୍ନ ପଚାରୁନାହାନ୍ତି; ଉତ୍ତର ଯୋଗାଇବାରୁ କଳାରେ ସେମାନେ ସିଦ୍ଧହସ୍ତ ।

ପ୍ରତ୍ୟେକ ଉଲ୍ଲେଖଯୋଗ୍ୟ ସାହିତ୍ୟରେ ପ୍ରଶ୍ନ ପଚରାଯାଏ । ସେ ପ୍ରଶ୍ନ ଶୁଣିବାକୁ ସମସ୍ତେ, ଏପରି କି ସ୍ୱୟଂ ଈଶ୍ୱର ମଧ୍ୟ ଶୁଣିବାକୁ ବାଧ୍ୟ । ସେ ପ୍ରଶ୍ନଗୁଡ଼ିକ ଏକାଧାରରେ ସରଳ ଓ ଜଟିଳ । ସ୍ରେଷ୍ଠ କୁଆଡ଼ିଏ ମରିଗଲେ ସେ ସାହିତ୍ୟ ସମଗ୍ର ବିଶ୍ୱକୁ କାଠଗଡ଼ାରେ ଠିଆ କରାଇଦିଏ । କୌଣସି ଅହେତୁକ ଶାସ୍ତିରେ କେହି ନିର୍ଯ୍ୟାତିତ ହେଲେ ସେ ସାହିତ୍ୟ

ସଚରାଚରଠାରୁ କୈଫିୟତ୍ ତଲବ୍ କରେ । ସାହିତ୍ୟିକ ଦୃଷ୍ଟିରେ ସଭ୍ୟତା ହେଉଛି ପ୍ରଶ୍ନ ପଚାରିବାର ସ୍ୱାଧୀନତା ଏବଂ ଯେଉଁଦିନ ଆଉ ପ୍ରଶ୍ନ ପଚରାଯାଉନାହିଁ—ସେଦିନ ସଭ୍ୟତାର ପରିସମାପ୍ତି ଘଟିଛି ବୋଲି ଧରିନିଆଯାଇପାରେ । ଯଦି ସାହିତ୍ୟିକ ପ୍ରଶ୍ନ ପଚାରିବାର ଔଚିତ୍ୟରୁ ନିଜକୁ ଅଲଗା କରି ରଖେ ବା କୋଳାହଳମୟ ପ୍ରଶଂସା ଭିତରେ ନିଜର ସ୍ୱର ଲୀନ ହେବାକୁ ଛାଡିଦିଏ, ସେ ଆଉ ସାହିତ୍ୟିକ ହୋଇ ରହିବ ନାହିଁ; ହେବ ଏକ ଉଚାଙ୍ଗ ପରମ୍ପରାର ମଉ଼ାଚଣ୍ଡିଆ ।

ଯେତେବେଳେ ଏପରି ପରିସ୍ଥିତି ଉପୁଜେ, ଯେତେବେଳେ ଆଉ ପ୍ରଶ୍ନ ପଚରାଯାଏ ନାହିଁ ଏବଂ ସବୁଆଡ଼େ ହାଟବଜାରରେ କୋଳାହଳ ଶୁଭେ, ସେତେବେଳେ ସାହିତ୍ୟ ଲେଖାଯିବ ନିଶ୍ଚୟ, କିନ୍ତୁ ସେ ସାହିତ୍ୟର ସଭ୍ୟତା ସହିତ ସମ୍ପର୍କ ପ୍ରାୟ ରହିବ ନାହିଁ । ଗଲା କେତେବର୍ଷ ଭିତରେ ପୃଥିବୀର ଛାପାଖାନାମାନଙ୍କରୁ ଯେତେ ସାହିତ୍ୟ ବାହାରିଛି ଇତିହାସରେ ତାର ପଟାନ୍ତର ନାହିଁ, କିନ୍ତୁ ସେଗୁଡ଼ିକ ଭିତରୁ ଅଧିକାଂଶ ଅଳ୍ପ କେତେଦିନ ପରେ ନିଶ୍ଚିହ୍ନ ହୋଇ ଯାଇଛନ୍ତି । ତାର କାରଣ ହେଉଛି, ସେଗୁଡ଼ିକ ଆମ ସଭ୍ୟତାର ଅଂଶ ନୁହନ୍ତି, ବରଂ ତାର ପ୍ରତିକୂଳପନ୍ଥୀ । ସେଗୁଡ଼ିକର ରଚୟିତାମାନଙ୍କର କିଛି କିଛି କଳ୍ପନାଶକ୍ତି ଏବଂ ଭାଷା-ବିନ୍ୟାସରେ ପଟୁତା ଥିଲା, କିନ୍ତୁ ଯେଉଁ ଯନ୍ତ୍ରଣାବୋଧ ଆମକୁ ଏମିତି ଏକ ଜାଗାକୁ ନେଇଯାଏ ଯେଉଁଠାରେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ଏକାକାର ଏବଂ ଯେଉଁଠାରେ ମନୁଷ୍ୟର ଭାଗ୍ୟହିଁ ଏକମାତ୍ର ପ୍ରସଙ୍ଗ, ତାହା ଏ କଳ୍ପନାଶକ୍ତିକୁ ବ୍ୟାପ୍ତ ଓ ମାର୍ଜିତ କରିନାହିଁ । ଏ ଯନ୍ତ୍ରଣାବୋଧ କୌଣସି ବ୍ୟକ୍ତିଗତ ଦୁର୍ବିପାକରୁ ବା ଲେଖକର ନିଜସ୍ୱ ସତ୍ତା ସହିତ ମିଶି ଯାଇଥିବା ଅନ୍ୟ ଏକ ବ୍ୟକ୍ତିର ଦୁର୍ଦ୍ଦଶାରୁ ଉପୁଜିପାରେ । ବ୍ୟକ୍ତିଗତ ଅବସ୍ଥିତିର ହେତୁ ରୂପେ ଏ ଯନ୍ତ୍ରଣା ଗୁରୁତ୍ୱପୂର୍ଣ୍ଣ ନୁହେଁ, ଆମର ଭାଗ୍ୟ ସମ୍ବନ୍ଧରେ ଆମର ଧାରଣାଗୁଡ଼ିକର ପୁନର୍ବିଚାରର ହେତୁ ରୂପେ ଏ ଯନ୍ତ୍ରଣା ଗୁରୁତ୍ୱପୂର୍ଣ୍ଣ । ଯେଉଁ ମୁହୂର୍ତ୍ତରେ ସାହିତ୍ୟିକ କୌଣସି ଯନ୍ତ୍ରଣାବୋଧ ଦ୍ୱାରା ଆକ୍ରାନ୍ତ ହୁଏ ନାହିଁ, ସେହି ମୁହୂର୍ତ୍ତରୁହିଁ ମନୁଷ୍ୟର ଭାଗ୍ୟ ସହିତ, ମନୁଷ୍ୟର ସଭ୍ୟତା ସହିତ ତାର ସମ୍ପର୍କ କଟିଯାଏ ।

ସାହିତ୍ୟରେ ଏ ଯନ୍ତ୍ରଣାବୋଧ ଯେଉଁ ଭାଷା ମାଧ୍ୟମରେ ପ୍ରକାଶିତ ହୁଏ ତାହା ବ୍ୟଞ୍ଜନାତ୍ମକ, ବର୍ଣ୍ଣନାତ୍ମକ ନୁହେଁ । ଯନ୍ତ୍ରଣାନୁଭୂତି ଚେତନାକୁ ଏପରି ଗୋଟିଏ ସ୍ତରକୁ ନେଇଯାଏ ଯେଉଁଠାରେ ଭାଷାର ଭୂମିକା ଅତି ଗୌଣ ଏବଂ ଯେଉଁଠାରେ ଆମର ପରିଚିତ ଭାଷା ବାସ୍ତବତାର ସଂଜ୍ଞା ଜ୍ଞାପନ କରିବାକୁ ଅସମର୍ଥ । ଖୁବ୍ ବେଶିରେ ଭାଷା ଚେତନାର ଏ ରାଜ୍ୟ ବିଷୟରେ କିଛି ଇଙ୍ଗିତ ଦେଇପାରେ କିନ୍ତୁ ସେ ବାସ୍ତବତାର ଅନୁଭୂତି ପ୍ରତ୍ୟକ୍ଷ ହେବା ଆବଶ୍ୟକ । ସାହିତ୍ୟର ସାଫଲ୍ୟ ଇଙ୍ଗିତ ଦେବାର ସାଫଲ୍ୟ ଦ୍ୱାରା ନିରୂପିତ ହୁଏ, ବର୍ଣ୍ଣନାର ସମ୍ପୂର୍ଣ୍ଣତା, ଦ୍ୱାରା ନୁହେଁ ।* ଅନେକ ସମୟରେ ସାହିତ୍ୟ କେବଳ ଏ ଅନୁଭୂତି କଣ ନୁହେଁ ତାହା ବର୍ଣ୍ଣନା କରିଥାଏ, ଏବଂ ଏ ଅନୁଭୂତି କଣ ତାହା ବୁଝିବାକୁ ମନକୁ ଏକୁଟିଆ ଛାଡ଼ିଦିଏ । * ପ୍ରତ୍ୟେକ ଉଚ୍ଚାଙ୍ଗ ସାହିତ୍ୟରେ ଭାଷା

* । ବିଷ୍ଣୁପୁରାଣରେ ରାଜା ସୌବୀର ଓ ତାଙ୍କର ପାଲିଙ୍କି ବୋହୁଥିବା ଭରତ ଋଷିଙ୍କ କଥୋପକଥନରେ ଭାଷାର ଗୌଣତା ଓ ତାର ସୀମିତ ପରିସର ଉପରେ ଏକ ଟିପ୍ପଣୀ ଅଛି । ଭରତଙ୍କୁ ଜଣେ ଅସାଧାରଣ ମହାତ୍ମା ବୋଲି ଜାଣିପାରି ରାଜା ପାଲିଙ୍କିରୁ ଓହ୍ଲାଇପଡ଼ି ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ପଚାରିଲେ, "ମହାଭାଗ, ମତେ ଅନୁଗ୍ରହ କରନ୍ତୁ, ଆଜି ପାଲିଙ୍କି ବୁହନ୍ତୁ ନାହିଁ, ଏବଂ ଆପଣଙ୍କର ପ୍ରକୃତ ପରିଚୟ ପ୍ରଦାନ କରନ୍ତୁ ।" ଭରତ ବ୍ୟକ୍ତିସତ୍ତ୍ୱର ସ୍ୱରୂପ ବୁଝାଇବାକୁ ଯାଇ କହିଲେ, "ଓଠ ଦାନ୍ତ ଓ ମୂର୍ଦ୍ଧନା ସାହାଯ୍ୟରେ ଜିଭ 'ମୁଁ' ଉଚ୍ଚାରଣ କରେ । ଏହାହିଁ 'ମୁଁ' ଶବ୍ଦର ଉତ୍ପତ୍ତି, କିନ୍ତୁ ଏହି ଉଚ୍ଚାରିତ ଶବ୍ଦଟି 'ମୁଁ' ନୁହେଁ ।"

* । ଭୀମଭୋଇଙ୍କ କବିତାରୁ ଦୁଇଟି ଉଦାହରଣ ଦିଆଗଲା—

(୧) ଅମଡ଼ା ଅପୋଡ଼ା ଭୂଇଁ, ଚନ୍ଦ୍ର ସୂର୍ଯ୍ୟ ଗମ୍ୟ ନାହିଁ,
'ନେଉ ସେ ସ୍ଥାନକୁ ଗୋ, ସୁନ୍ଦର ଗୁରୁଙ୍କୁ ।

(୨) ନୁହନ୍ତି କଳାଧବଳା, ରଙ୍ଗ କୁଙ୍କୁମ ପିଙ୍ଗଳା,
ନାହିଁ ହିବା ଋତ ଗୋ ନ ଭେଦେ ପ୍ରକୃତି,
ଯାର ଥିବ ଜ୍ଞାନ ଆଖି ସେ ଅବା ପାରିବ ଦେଖି
ରୂପ ଜାଜ୍ୱଲ୍ୟମୟ ତା ଜ୍ୟୋତି ଗୋ ।

କେବଳ ବ୍ୟଞ୍ଜନା ପାଇଁ ବ୍ୟବହୃତ ହୁଏ; ଚେତନାକୁ ଏକ ଅନବଚ୍ଛିନ୍ନ ଅଭିଜ୍ଞତାର କଳ୍ପନାରେ ଉଦ୍‌ବୁଦ୍ଧ କରିବା ତାର କାମ, ସେ ଅଭିଜ୍ଞତାର ବିଶଦ ବର୍ଣ୍ଣନା ତାର କାମ ନୁହେଁ ।

ଯେତେବେଳେ ଲେଖକମାନେ ସ୍ୱୀକୃତ ସନ୍ଧାନରେ ଜନମତକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟିତ ଲୋକମାନଙ୍କର ଅନୁଗତ ହୋଇ ପଡ଼ନ୍ତି, ସେତେବେଳେ ସେମାନେ ବସ୍ତୁତଃ ଭାଷାକୁ ଏପରି ଭାବେ ବ୍ୟବହାର କରିବାକୁ ଅଙ୍ଗୀକାର କରନ୍ତି ଯେ ତାହା ସାହିତ୍ୟର ମହତ୍ତ୍ୱପୂର୍ଣ୍ଣ ପରମ୍ପରାରେ ଭାଷା ଯେପରି ବ୍ୟବହୃତ ହୋଇ ଆସିଛି ସେପରି ନହୋଇ କେତୋଟି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟର ଅଗ୍ରସର ଓ ପ୍ରତିଷ୍ଠାପାଇଁ ବ୍ୟବହୃତ ହେବ । ଭାଷାର ଏହି ଦ୍ୱିବିଧ ବ୍ୟବହାର ମଧ୍ୟରେ ପାର୍ଥକ୍ୟ ସାଧାରଣତଃ ପରିଲକ୍ଷିତ ହୁଏ ନାହିଁ, ଏପରିକି ଲେଖକମାନେ ମଧ୍ୟ ଏ ତାରତମ୍ୟ ବିଷୟରେ ଅବଗତ ହୁଅନ୍ତି ନାହିଁ । ଅନେକ ବର୍ଷପରେ କ୍ରମାଗତ ଅପପ୍ରୟୋଗ-ଜନିତ ଭାଷାର ଆତ୍ମିକ ଅଧଃପତନ ସମ୍ବନ୍ଧରେ ହୁଏତ ଆମେ ସଚେତନ ହେବୁ; ତାହା ମଧ୍ୟ ସନ୍ଦେହଜନକ, କାରଣ ଭାଷାର ଉଚିତର ପ୍ରୟୋଗ ସହିତ ଆମେ ଅନେକଙ୍କର ଅନଭ୍ୟସ୍ତ ହୋଇପଡ଼ିଥିବା । ଉଦାହରଣ ସ୍ୱରୂପ, ଓଡ଼ିଶାରେ ପ୍ରାପ୍ତ ଗୋଟିଏ ପ୍ରକୃଷ୍ଟଧର୍ମୀ ଓଡ଼ିଆ ସାହିତ୍ୟର ପରମ୍ପରା ସହିତ, ଏପରିକି ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ପରି ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠାତାମାନଙ୍କ କୃତି ସହିତ ପରିଚୟ ଅତ୍ୟନ୍ତ ନଗଣ୍ୟ ହୋଇପଡ଼ିଲାଣି । ଏହା ଫଳରେ ଓଡ଼ିଆ ଭାଷା ପ୍ରୟୋଗର ପରମ୍ପରା ସମ୍ବନ୍ଧରେ ଅନଭିଜ୍ଞତା ବ୍ୟାପକ ହୋଇ-ପଡ଼ିଲାଣି ଏବଂ ଯେଉଁ ପ୍ରୟୋଗ ସହିତ ଲୋକେ ଅଭ୍ୟସ୍ତ ହେଉଛନ୍ତି ତାହା ହେଉଛି ଏପରି ପ୍ରୟୋଗ ଯାହା କୌଣସି କୋମଳ, ଉଚିତର ଚେତନା ଉଦ୍ରେକ ନ କରି ଉତ୍ତେଜନା, ଯୌଥ ଆଚରଣ ଏବଂ ଯାହା କୁହାଯାଉଛି ତାକୁ ତର୍ଜମା ନ କରି ବିଶ୍ୱାସ କରିବାର ଅଭ୍ୟାସକୁ ବଳବତ୍ତର କରେ । ପୃଥିବୀର ସବୁ ଭାଷାରେ ଏହାହିଁ ଘଟୁଛି ଏବଂ ଭାଷାର ନିର୍ମଳ ପ୍ରୟୋଗର ପରମ୍ପରା ରକ୍ଷାକରିବା ପାଇଁ ଉଦାସୀନତା ଆଜି ପୃଥିବୀବ୍ୟାପୀ ।

ଭାଷାର ସାମର୍ଥ୍ୟ ଓ ଧ୍ୱନିକୁ ଉତ୍ତେଜନା, ଅମାନୁଷିକତା ଓ ଅସଭ୍ୟତା ଲାଗି ପ୍ରୟୋଗ କରିବା ଯେ କେବଳ ସାମୟିକ ଭାବେ କ୍ଷତିକାରକ ବା ସେପରି ପ୍ରୟୋଗ କରୁଥିବା ଲେଖକମାନଙ୍କ ପକ୍ଷରେ ଏକ କଳଙ୍କ ତା ନୁହେଁ, ସେହି ଭାଷା ସହିତ ସଂଶ୍ଳିଷ୍ଟ ସଂସ୍କୃତି ପକ୍ଷରେ ଦୀର୍ଘକାଳ ପାଇଁ ମାରାତ୍ମକ, ଏକ ଭୟାବହ ଅଧୋଗତିର କାରଣ ନିକଟ ଅତୀତର ଇତିହାସରୁ ଏବଂ ସମସାମୟିକ ଅଭିଜ୍ଞତାରୁ ଏହା ପ୍ରମାଣ କରିବା ପାଇଁ ବହୁତ ତଥ୍ୟ ମିଳିବ, କିନ୍ତୁ ତା ନ କରି ଗୋଟିଏ ଆଦିମ ସମାଜର ପୁରୁଣା କାହାଣୀଟିଏ ଉଲ୍ଲେଖ କଲେ ଚଳିବ । କାହାଣୀଟି ଉତ୍ତର ଆମେରିକାର ଗୋଟିଏ ଆଦିମ ଜାତିର ।

ବୁଢ଼ାଟିଏ ଥିଲା । ଦିନେ ଯାଉଁ ଯାଉଁ ସେ ଗୁଡ଼ିଏ ଅଦ୍ଭୁତ ଗୀତ ଶୁଣିବାକୁ ପାଇଲା । ଗୀତ କେଉଁଠୁ ଆସୁଛି ସେ ପ୍ରଥମେ ଜାଣି ପାରିଲା ନାହିଁ । ବହୁତ ଖୋଜିବା ପରେ ଦେଖିଲା ଯେ ଗୁଡ଼ିଏ ଠେକୁଆ ଏକାଠି ହୋଇ ଗୀତ ଗାଉଛନ୍ତି । ସେମାନେ ଗୋଟିଏ ଜାଗାରେ ନିଆଁ ଜାଳୁଥିଲେ ଓ ତାତିଲା ପାଉଁଶ ଉପରେ ଶୋଇ ଗୀତ ଗାଉଥିଲେ । ଗୋଟିଏ ଠେକୁଆ ସମସ୍ତଙ୍କ ଉପରେ ପାଉଁଶ ଘୋଡ଼ାଇ ଦେଉଥିଲା । କିଛି ସମୟ ପରେ ସେମାନେ ଝାଡ଼ିଝୁଡ଼ି ହୋଇ ପାଉଁଶଗଦା ଭିତରୁ ବାହାରୁଥିଲେ । ଏ ଖେଳରେ ସେମାନେ ଖୁବ୍ ମଜ୍ଜି ଯାଇଥିଲେ ।

ବୁଢ଼ାଟି ଠେକୁଆମାନଙ୍କୁ କହିଲା, "ତମର ଏ ଖେଳ ମତେ ଖୁବ୍ ଆନନ୍ଦିତ ଲାଗୁଛି । ମତେ ଟିକିଏ ଶିଖାଇ ଦିଅନ୍ତ ନି ?"

ଠେକୁଆମାନେ କହିଲେ, "ତଥାସ୍ତୁ, କିନ୍ତୁ ଆମେ ଯେଉଁ ଗୀତ ଗାଉଛୁଁ ତମେ ତାହା ଗାଇବ । ତା ଛଡ଼ା, ପାଉଁଶ ଭିତରେ ବେଶି ସମୟ ରହିବ ନାହିଁ ।"

ବୁଢ଼ାଟି ତାଙ୍କ ଗୀତ ଶିଖିଗଲା । ସେ ପାଉଁଶ ଉପରେ ଶୋଇଲା । ଠେକୁଆମାନେ ତା ଉପରେ ପାଉଁଶ ଓ ଉଡ଼ିନିଆଁ କୁଢ଼ାଇ ଦେଲେ, କିନ୍ତୁ ତାକୁ କିଛି ଲାଗିଲାନି ।

ବୁଢ଼ାଟି କହିଲା, "ବାଃ, ତମେ ସବୁ ସତରେ ଖୁବ୍ ବଢ଼ିଆ ଔଷଧ ଜାଣିଛ । ମୁଁ ଶିଖିଲି କି ନାହିଁ ଟିକିଏ ପରୀକ୍ଷା କରି ଦେଖେଁ । ଆଚ୍ଛା,

ତମେ ସବୁ ଏଥର ପାଉଁଶ ଉପରେ ଶୁଅ, ଆଉ ମୁଁ ତମ ଉପରେ ପାଉଁଶ ଓ ରଡ଼ନିଆଁ ଲଦି ଦେଉଛି ।

ଠେକୁଆମାନେ ପାଉଁଶ ଉପରେ ଶୋଇ ରହିଲେ । ବୁଢ଼ା ତାଙ୍କ ଉପରେ ଜଳନ୍ତା ନିଆଁ ଲଦି ଦେଲା । ସମସ୍ତେ ସିଝି କରି ମରିଗଲେ । ଗୋଟିଏ ବୁଢ଼ା ଠେକୁଆ ଖସି ପଳାଇଲା ବେଳେ ବୁଢ଼ା ତାକୁ ଧରି ପକାଇଲା । ତାକୁ ବି ବୁଢ଼ା ନିଆଁରେ ପକାଇ ଦେଇଥାନ୍ତା, କିନ୍ତୁ ଠେକୁଆଟି ବହୁତ ନେହୁରା ହୋଇ କହିଲା ଯେ ତା ଘରଁାର ଛୁଆ ହେବାର ଅଛି । ବୁଢ଼ା ତାକୁ ଛାଡ଼ି ଦେଇ କହିଲା, "ହଉ ଯା, ସବୁ ଠେକୁଆ ମରିଗଲେ ଚଳିବ ନାହିଁ ।" ତାପରେ ସେ ଅନ୍ୟ ଠେକୁଆମାନଙ୍କୁ ନିଆଁରୁ କାଢ଼ି ମହା ଆନନ୍ଦରେ ଖାଇଲା ।

ଏଥିରୁ ଏହି ଶିକ୍ଷା ମିଳୁଛି ଯେ ଠେକୁଆମାନେ ବୁଢ଼ାକୁ ତାଙ୍କ ଗୀତ ନ ଶିଖାଇଥିଲେ ଅକାଳମୃତ୍ୟୁରୁ ରକ୍ଷା ପାଇଥାନ୍ତେ ।

୨

ସାହିତ୍ୟ-ସୃଷ୍ଟି ସହିତ ଆତ୍ମପ୍ରଚାରର ଖାପ୍ ଖାଉ ନ ଥିବା ସ୍ଥଳେ କେତେକ ଲେଖକ ଆତ୍ମପ୍ରଚାର ପାଇଁ ବ୍ୟାକୁଳ ହୁଅନ୍ତି କାହିଁକି ? ଲେଖକ ଓ ପାଠକମାନେ ପରସ୍ପରର ନିକଟବର୍ତ୍ତୀ ନ ହେଲେ ଆଧୁନିକ ସାହିତ୍ୟର ଉପଲବ୍ଧି କଷ୍ଟକର ହେବ ବୋଲି ଯୁକ୍ତି କରାଯାଇପାରେ । କିନ୍ତୁ ପରେ ପୁରାତନ ସାହିତ୍ୟର ଗୋଟିଏ ନମୁନା ଅନୁଶୀଳନ କରି ଆମେ ଦେଖିବା ଯେ ଗୁଣାତ୍ମକ ଦୃଷ୍ଟିରୁ ତାହା ଆଧୁନିକ । ଯଦି ଆଧୁନିକ ଯୁଗର ସର୍ବୋତ୍ତମ ରଚନାମାନଙ୍କଠାରୁ ଆଗରୁ ଦିନର ସଫଳ ରଚନାର ଆବେଗ ପୃଥକ୍ ନୁହେଁ ଏବଂ ଯଦି ରଚନାକାଳ ଭିତ୍ତିରେ ସାହିତ୍ୟର ଶ୍ରେଣୀବିଭାଗ ଅଯୌକ୍ତିକ, ତେବେ ଆଧୁନିକ ସାହିତ୍ୟ ଲେଖକ-ପାଠକ ସମ୍ପର୍କରେ ଏକ ମୌଳିକ ପରିବର୍ତ୍ତନ ଦରକାର କରେ ବୋଲି କହିବା ଯୁକ୍ତିସିଦ୍ଧ ନୁହେଁ ।

ନିଜଦ୍ୱାରା ଘୋଷିତ ଓ ନିଜ ରଚନାରେ ସନ୍ନିବିଷ୍ଟ ଆଦର୍ଶ ପ୍ରତି ଅନୁରକ୍ତିର ଅଭାବ ହିଁ ପ୍ରକୃତ କାରଣ । ଆଗାମୀ ଦିନର ସାହିତ୍ୟ, ବୈପ୍ଳବିକ ଚେତନାପ୍ରାପ୍ତ ସାହିତ୍ୟ, ଅଶ୍ରୁତର ଶୃଙ୍ଖଳ ଭାଙ୍ଗି ନୂତନ ଦିଗନ୍ତ ଉନ୍ମୋଚନ କରୁଥିବା ସାହିତ୍ୟ ବିଷୟରେ ସବୁ କଥାବାର୍ତ୍ତା,

ସବୁ ଆଲୋଚନା ବାଜେ କଥା । ସାହିତ୍ୟିକ ନିଜ କଳ୍ପନାର ଅନାବିଳତା ରକ୍ଷା କରି ପାରି ନାହିଁ ଓ ସେ କଳ୍ପନା ସହିତ ତାର ସମ୍ପର୍କ ଉଦ୍ଦେଶ୍ୟପ୍ରଣୋଦିତ । ଯାହାକୁ ସତ୍ୟ ବୋଲି ପ୍ରତିପାଦିତ କରେ, ସେଥିରେ ସେ ଅଂଶଗ୍ରହଣ କରେ ନାହିଁ । ଅଂଶଗ୍ରହଣର ପରିମାଣ ଯେତେ କମ୍, ଅଂଶଗ୍ରହଣ ସମ୍ବନ୍ଧରେ ଲୋକଙ୍କୁ ଧାରଣା ଦେବାର ପ୍ରଚେଷ୍ଟା ସେତେ ବେଶି । କେତେବେଳେ ସେ ପ୍ରଚେଷ୍ଟା କଳା ଓ ସାହିତ୍ୟ ବିଷୟରେ ବୈପ୍ଳବିକ ମତ ପ୍ରକାଶରେ ଦେଖାଦିଏ ତ କେତେବେଳେ ଏକ ଅପରିଚ୍ଛନ୍ନ ଚେହେରାକୁ ଜନ୍ମ ସହକାରେ ବଜାୟ ରଖିବା ପରି ଅଜବ କାର୍ଯ୍ୟକଳାପରେ ଦେଖାଦିଏ ।

ଉଚ୍ଚକୋଟୀର କୌଣସି କଳା ପାଗଳାମି-ପ୍ରସୂତ ହୋଇପାରେ ବା କୌଣସି ପ୍ରକାରର ମସ୍ତିଷ୍କ ବିକୃତି କଳାସୃଷ୍ଟିର ସହାୟକ ହୋଇପାରେ ବୋଲି ମୁଁ ବିଶ୍ୱାସ କରେ ନାହିଁ । ପାଗଳ ହୋଇଥିବା ଅବସ୍ଥାରେ କୌଣସି କଳାକାର ଉଲ୍ଲେଖଯୋଗ୍ୟ ସର୍ଜନା କରିଥିବାର ଦୃଷ୍ଟାନ୍ତ ନାହିଁ । କଳାକାରର ବୁଦ୍ଧିବୃତ୍ତି ତା ନିଜ ଅକ୍ତିଆରରେ ରହିବା ଉଚିତ ଏବଂ ସେ ତାର ସମସ୍ତ ମାନସିକ ଶକ୍ତି କଳାର ସାଧନପାଇଁ ନିୟୋଜିତ କରିବାକୁ ସମର୍ଥ ହେବା ଉଚିତ; କିନ୍ତୁ ଏ ବୁଦ୍ଧି ସାଂସାରିକ ସାଫଲ୍ୟ ହାସଲ କରିଥିବା ଲୋକଙ୍କ ବୁଦ୍ଧିଠାରୁ ଅଲଗା । କଳାକାର ଏକଥା କହିବା ଅନୁଚିତ ଯେ ତାର କୌଣସି ବୁଦ୍ଧିବୃତ୍ତି ନାହିଁ ଏବଂ ପାଗଳାମିର ପ୍ରାୟ ନିକଟବର୍ତ୍ତୀ ଏକ ଶକ୍ତିଶାଳୀ ଆବେଗଦ୍ୱାରା ହିଁ ତାର ସୃଷ୍ଟି ନିୟନ୍ତ୍ରିତ । ତାର ବୁଦ୍ଧି ବେଶ୍ ଶାଣିତ, କିନ୍ତୁ ତାହା ବ୍ୟକ୍ତିଗତ ସ୍ୱାର୍ଥସାଧନ ପାଇଁ ବ୍ୟବହୃତ ନ ହୋଇ ଏକ ସୂକ୍ଷ୍ମ ସତ୍ୟର କଳ୍ପନା ପାଇଁ ବ୍ୟବହୃତ ହୁଏ । ସେ ସତ୍ୟ ଦୃଶ୍ୟ ନ ହେଲେ ମଧ୍ୟ ସଚରାଚରରେ ବିଦ୍ୟମାନ ଏବଂ ତଦ୍ଦ୍ୱାରା ମନୁଷ୍ୟର ଜୀବନଧାରା ନିୟନ୍ତ୍ରିତ । ବୁଦ୍ଧି ନ ଥିଲେ ଏପରି ଏକ ସତ୍ୟର କଳ୍ପନା ଅସମ୍ଭବ ଏବଂ ସେ ସତ୍ୟର ବର୍ଣ୍ଣନା ପାଇଁ ଭାଷା ପ୍ରୟୋଗ କରିବା ଅସମ୍ଭବ । ଏକଥା ସତ ଯେ ଅନେକ କଳାକାର ସାଂସାରିକ ସାଫଲ୍ୟ ଅର୍ଜନ କରି ପାରି ନାହାନ୍ତି, କିନ୍ତୁ ବୁଦ୍ଧିର ଅଭାବ ତାର କାରଣ ନୁହେଁ, ଅନ୍ୟ କାମ ପାଇଁ ବୁଦ୍ଧିର ବିନିଯୋଗ ତାର କାରଣ ।

ଯେତେବେଳେ କଳାକାର ସାଂସାରିକ ସାଫଲ୍ୟ ହାସଲ କରିଥିବା ଲୋକଙ୍କ ବୁଦ୍ଧି ପରି ନିଜ ବୁଦ୍ଧିକୁ ବ୍ୟବହାର କରେ (ସେମାନେ ହାସଲ କରିଥିବା ସାଫଲ୍ୟ ଯଦି ତାର ଲକ୍ଷ୍ୟ ହୁଏ, ତେବେ ଏପରି ବ୍ୟବହାର ଅବଶ୍ୟମ୍ଭାବୀ), ସେତେବେଳେ ସେ ବୁଦ୍ଧିର କଳାକାରୋଚିତ ବ୍ୟବହାର ପରିହାର କରିବାକୁ ଅଙ୍ଗୀକାର କରେ ଏବଂ ତାକୁ ଓ ତାର ମାନସଚକ୍ଷୁରେ ଦୃଶ୍ୟ ଜୀବନକୁ ସଂଲଗ୍ନ କରୁଥିବା ସେତୁକୁ ଭାଙ୍ଗିଦିଏ । କୌଣସି ତାତ୍ତ୍ୱିକ ବୟାନ, ଆଧୁନିକ ସାହିତ୍ୟର ବୈଶିଷ୍ଟ୍ୟ ସମ୍ବନ୍ଧରେ କୌଣସି ତର୍କମା ସେ ଭଙ୍ଗାରୁଜାକୁ ଲୁଚାଇ ପାରିବ ନାହିଁ କି ତାହା ଯଥାର୍ଥ ବୋଲି ପ୍ରମାଣ କରିପାରିବ ନାହିଁ ।

### ୩

'ମଥୁରା ମଙ୍ଗଳ'ର କବି ଭକ୍ତଚରଣ ଦାସଙ୍କ ବିଷୟରେ ଆମେ ଖୁବ୍ କମ୍ ଜାଣୁ । ସେ କେବେ ଜନ୍ମ ହୋଇଥିଲେ, କେବେ ତାଙ୍କର ଦେହାନ୍ତ ହେଲା ଏତିକି ମଧ୍ୟ ନିର୍ଦ୍ଦିଷ୍ଟ ଭାବେ ଜଣାନାହିଁ, ତାଙ୍କର କାବ୍ୟାଦର୍ଶ ତ ଦୂରର କଥା । ନାନାଦି ଅନୁସନ୍ଧାନ ପରେ କାବ୍ୟଟିର ରଚନାକାଳ ଅଷ୍ଟାଦଶ ଶତାବ୍ଦୀର ଉତ୍ତରାର୍ଦ୍ଧ ବୋଲି ଜଣାପଡ଼ୁଛି, କିନ୍ତୁ ଓଡ଼ିଆ ସାହିତ୍ୟାକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ହୋଇ ରହିବାର ତାଙ୍କ ତରଫରୁ କୌଣସି ପ୍ରମାଣ ନାହିଁ । ସାଧାରଣତଃ କାବ୍ୟଟି ଓଡ଼ିଆ ଭକ୍ତିସାହିତ୍ୟର ଏକ ମହତ୍ତ୍ୱପୂର୍ଣ୍ଣ କୃତି ଭାବେ ଏବଂ ଓଡ଼ିଶୀ ବୈଷ୍ଣବ ଧର୍ମର ଏକ ପ୍ରାମାଣିକ ଗ୍ରନ୍ଥ ଭାବେ ଗୃହୀତ ହୋଇ ଆସିଛି ଯଦିଓ ଯଶୋଦା ଓ ଗୋପୀମାନେ ଏକ ଭାବପ୍ରବଣ ଅନୁଭୂତିର କୌଣସି ତାତ୍ତ୍ୱିକ ବ୍ୟାଖ୍ୟାକୁ ସ୍ପଷ୍ଟ ଭାବେ ପ୍ରତ୍ୟାଖ୍ୟାନ କରିଛନ୍ତି (ପଞ୍ଚବିଂଶ ଓ ସପ୍ତବିଂଶ ଛାନ୍ଦ ଦ୍ରଷ୍ଟବ୍ୟ) । ଆଜିକାଲି ଯେଉଁ ବିଚ୍ଛିନ୍ନତା ଓ ନିଃସଙ୍ଗତା କଥା କୁହାଯାଉଛି, 'ମଥୁରା ମଙ୍ଗଳ' ତାର ଏକ କାବ୍ୟିକ ଅନୁଶୀଳନ ଏବଂ ସେ ଦୃଷ୍ଟିରୁ ସଚେତନ ବିଚ୍ଛିନ୍ନତା-ବୋଧ ଦ୍ୱାରା ଅନୁପ୍ରାଣିତ ଅନେକ ଆଧୁନିକ ସାହିତ୍ୟ-କୃତି ଅପେକ୍ଷା ତାହା ସଫଳତର । ଗୋଟିଏ ଦିଗରେ ବିଚ୍ଛିନ୍ନତା ଓ ଏକ ଆତ୍ମସର୍ବସ୍ୱ ବ୍ରହ୍ମାଣ୍ଡରେ ବ୍ୟକ୍ତିର ବିକାଶର ସମସ୍ତ ସମ୍ଭାବନାର ନିଶ୍ଚିତ ବିନାଶ, ଅନ୍ୟ ଦିଗରେ ଏପରି ବ୍ରହ୍ମାଣ୍ଡର ପରିଧି ଅତିକ୍ରମ କରି ପୃଥକ୍ ବ୍ୟକ୍ତିତ୍ୱ ସହିତ ଘନିଷ୍ଠ ଭାବେ ସଂଯୁକ୍ତ ହେବାଦ୍ୱାରା

ବ୍ୟକ୍ତିତ୍ୱର ସାର୍ଥକତା, ଏ ଦୁଇଟି ଦିଗର ଦ୍ୱନ୍ଦ୍ୱ ମୂଲ୍ୟାୟନ ସମ୍ଭବତଃ 'ମଥୁରା ମଙ୍ଗଳ'ର ପ୍ରକୃତ କାବ୍ୟ-ପ୍ରେରଣା । କାବ୍ୟରେ ବର୍ଣ୍ଣିତ ସମସ୍ତ ଘଟଣା ଜଣେ ପାରଙ୍ଗମ ଓ ବିଚକ୍ଷଣ ବ୍ୟକ୍ତି (କୃଷ୍ଣ)ଙ୍କର ଲୀଳା ବୋଲି ଗ୍ରହଣ ନ କରି ଉପରୋକ୍ତ ଦ୍ୱିବିଧ ମୂଲ୍ୟବୋଧର ପ୍ରତୀକ ବୋଲି ଗ୍ରହଣ କଲେ 'ମଥୁରା ମଙ୍ଗଳ'ର ଅନ୍ତର୍ନିହିତ ଚେତନାର ଗୁଣ ସ୍ପଷ୍ଟ ହୋଇ ପଡ଼ିବ । ଏ ଚେତନା ସାମୟିକ ରୁଚି ବା ଚିନ୍ତାଧାରା ଦ୍ୱାରା ନିର୍ଦ୍ଦିଷ୍ଟ ନୁହେଁ, ଦୁଇଟି ସବୁକାଳେ ବିପରୀତଧର୍ମୀ ମନୋବୃତ୍ତି ମଧ୍ୟରେ ଉଚିତର ଅଧିକତର ମାନବିକ ମନୋବୃତ୍ତିର ନିଃସଙ୍କୋଚ ପକ୍ଷ ସମର୍ଥନ । ଏପରି ସାହିତ୍ୟକୁ ରଚନାକାଳର ମାନଦଣ୍ଡରେ ବିଚାର କରାଯାଏ ନାହିଁ, ବିଚାର କରାଯାଏ ତାର ଆବେଦନର ଚିରନ୍ତନତା ଦ୍ୱାରା, ଯେପରି ଆଧୁନିକ ସାହିତ୍ୟର ମହାରଥୀମାନଙ୍କ କୃତି ବିଚାର୍ଯ୍ୟ ହେବା ଉଚିତ—ଆଜି, ଶହେ ବର୍ଷ ପରେ, ହଜାରେ ବର୍ଷ ପରେ ।

କଂସ ଓ ତାର ସମର୍ଥକ ଅସୁରମାନେ (ଏଠାରେ ଉଲ୍ଲେଖଯୋଗ୍ୟ ଯେ, କଂସ ଓ ତାର ମନୋବୃତ୍ତିକୁ ସମର୍ଥନ କରୁଥିବା ଲୋକମାନେହିଁ ଅସୁର ଏବଂ ତାର ଅନ୍ୟାନ୍ୟ ପ୍ରଜାମାନେ—ଏପରିକି ତାର ପିତା, ଭଉଣୀ, ଭଣୋଇ ଓ ମନ୍ତ୍ରୀ—ମନୁଷ୍ୟ) ବିଚ୍ଛିନ୍ନତାର, ସଂକୀର୍ଣ୍ଣ ନିଜସ୍ୱତାର ଓ ତଜ୍ଜନିତ ନିଃସଙ୍ଗତାର ମୂର୍ତ୍ତି । ସେମାନେ ନିଜକୁ ଅନ୍ୟମାନଙ୍କଠାରୁ ଅଲଗା କରି ଦେଖନ୍ତି, ଅନ୍ୟ ସହିତ କୌଣସି ପ୍ରଗାଢ଼ ସମ୍ପର୍କ ଦ୍ୱାରା ସେମାନଙ୍କ ଜୀବନ ସମୃଦ୍ଧ ନୁହେଁ, ନିଜତ୍ୱର ଅନୁଭୂତି ହିଁ ସେମାନଙ୍କର ପ୍ରଧାନ ଅନୁଭୂତି । ସେମାନଙ୍କର ଅନ୍ୟାନ୍ୟ ସବୁ ସମ୍ପର୍କ ଏ ଅନୁଭୂତିକୁ ବଳବତ୍ତର କରିବା ପାଇଁ ଉଦ୍ଦିଷ୍ଟ ଏବଂ ନିଜର ପ୍ରଚଣ୍ଡ ଆତ୍ମାନୁଭୂତିର ପରିପୂରକ ନ ହେଲେ ଆଉ କାହାରି ସତ୍ତାର କୌଣସି ବାସ୍ତବତା ନାହିଁ । ଏପରି ଅହଂସର୍ବସ୍ୱ, ସମ୍ପର୍କଶୂନ୍ୟ ବିଚ୍ଛିନ୍ନତା ହିଁ କଂସର ଜୀବନ ଏବଂ ସେ ଜୀବନର ନିଃସଙ୍ଗତା, ଭୟାବହତା, ଧ୍ୱଂସାତ୍ମକତା ଭକ୍ତଚରଣ ଉଦ୍ଘାଟ୍ୟ ରଖି ନାହାନ୍ତି ।

କାବ୍ୟଟିରେ କଂସ ସର୍ବମୋଟ ପାଞ୍ଚଥର ଅବତୀର୍ଣ୍ଣ ହୋଇଛନ୍ତି—ପ୍ରଥମ, ଦ୍ୱାଦଶ, ଅଷ୍ଟାଦଶ, ଊନବିଂଶ ଓ ବାବିଂଶ ଛାନ୍ଦରେ । ପ୍ରଥମ ଛାନ୍ଦରେହିଁ ଏକଥା ସ୍ପଷ୍ଟ ଯେ ତାର ବ୍ୟକ୍ତିତ୍ୱର ଆଉ କୌଣସି ଫଳପ୍ରଦ

ସମ୍ଭାବନା ନାହିଁ, ତାର ବିଚ୍ଛିନ୍ନତା ସମ୍ପୂର୍ଣ୍ଣ, ଏବଂ ସେ ସ୍ୱୟଂ ଅବଗତ ଯେ ତାର ଜୀବନର ଅଶାନ୍ତ ପରିସମାପ୍ତି ତାର ମାରାତ୍ମକ ଦୃଷ୍ଟିଭଙ୍ଗୀର ଅନିବାର୍ଯ୍ୟ ପରିଣାମ । ପାଞ୍ଚଥର ଯାକ କଂସ ବିବୃତ ଓ ଉପସ୍ଥାପିତ ହୋଇଛି ଏବଂ ପ୍ରତ୍ୟେକ ବର୍ଣ୍ଣନାରେ ସୂଚିତ ହୋଇଛି ଯେ, କଂସ ନିଜ ଜୀବନର ବ୍ୟର୍ଥତା ବିଷୟରେ ସଚେତନ ଓ ସେ ସ୍ପଷ୍ଟ ଉପଲବ୍ଧି କରିଛି ଯେ, ସେ ବ୍ୟର୍ଥତାର ଅନୁଭୂତିରୁ ତାର ନିସ୍ତାର ନାହିଁ । ଏହି ଉପଲବ୍ଧିହିଁ ତାର ଭୟର କାରଣ । ଛିନ୍ନ ସମ୍ପର୍କଗୁଡ଼ିକୁ ଯୋଡ଼ିବାର ସମୟ ଆଉ ନାହିଁ, ନିଜର ସତ୍ତା ଭିତରେ ପ୍ରମତ୍ତ ରହିବାର ଅପରାଧରେ ନିଜର ସତ୍ତା ହିଁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେବ । କୃଷ୍ଣ ଓ ବଳରାମଙ୍କୁ ମଥୁରାକୁ ଆଣିବା ପାଇଁ ଅକ୍ରୂରଙ୍କୁ ଆଦେଶ ଦେଲାବେଳେ କଂସ "ଭୟେ କମ୍ପଇ ହୋଇ ଥରହର" ଓ 'କହେ କାତରତରେ ହୋଇ ନମ୍ର' (୧.୬୯ ଓ ୧.୭୧) ।* ଉଗ୍ର ଆଚରଣରେ ତନ୍ମୟ ହୋଇ ଏ ଅନୁଭୂତିରୁ ନିଷ୍କୃତି ପାଇବାକୁ ଚେଷ୍ଟା କରିବା ଏ ଧରଣର ଲୋକଙ୍କ ପକ୍ଷରେ ସ୍ୱାଭାବିକ ଏବଂ କଂସ ଏପରି ଚେଷ୍ଟା କରିଛି, କିନ୍ତୁ ସେତେବେଳକୁ ସେ ଅନୁଭୂତି ତାର ସମୁଦାୟ ବ୍ୟକ୍ତିତ୍ୱକୁ ଆକ୍ରାନ୍ତ କରିସାରିଲାଣି ଏବଂ ତାର ଅଚେତନ ମନରେ ଦୃଢ଼ ହୋଇସାରିଲାଣି । ଅଚେତନ ସ୍ତରରୁ ସେ ଭୟ ସ୍ୱପ୍ନ ଭାବେ ଉଠି ତାର ନିଷ୍କୃତିବୋଧକୁ ପଣ୍ଡ କରି ଦେଉଛି ଏବଂ ତାର ମୃତ୍ୟୁ ଚେତନାର ଛଦ୍ମବେଶକୁ ଉତାରି ଦେଉଛି—

ଝାଇଁ ମାରଇ ନିଃଶ୍ୱାସ ପ୍ରଖର । ସପନରେ ଦେଖଇ ନିଜ ଶିର ॥
ଶରୀରବଢ଼ ନିଃଶ୍ୱାସ ପବନ । କରେ ଦକ୍ଷିଣ ଦିଗକୁ ଗମନ ॥
କଣ୍ଠେ ମନ୍ଦାର ମାଳ ବିଭୂଷଣ । କରି ମଇଁଷି ଯାନ ଆରୋହଣ ॥
ଚର୍ମ ଦେଶରେ ପଡ଼ିଛି କବନ୍ଧ । ଫିଟି ପବନେ ଉଡ଼େ କେଶ କେଶ ॥

---

* ପ୍ରଥମ ସଂଖ୍ୟାଟି ଗ୍ରନ୍ଥର କ୍ରମିକ ସଂଖ୍ୟା ଓ ଦ୍ୱିତୀୟ ସଂଖ୍ୟାଟି ସେହି ଗ୍ରନ୍ଥରେ ପଦର ସଂଖ୍ୟା । ଉପରୋକ୍ତ ଉଦାହରଣରେ ଉଦ୍ଧୃତି ଦୁଇଟି ଯଥାକ୍ରମେ ପ୍ରଥମ ଗ୍ରନ୍ଥର ୬୯ ପଦରୁ ଓ ସେ ସେହି ଗ୍ରନ୍ଥର ୭୧ ପଦରୁ । ପରବର୍ତ୍ତୀ ଉଦ୍ଧୃତିଗୁଡ଼ିକ ଏହି ଭାବରେ ସୂଚିତ ।

ଘୃଣଦେଗେ ଶୃଗାଳ ଶ୍ୱାନ ଫେର । ଗୃଧ୍ର ଅଶ୍ୱ ମଞ୍ଜାର ଧ୍ୱନ ଜଳ ॥
ଘ୍ରାଣ ନ ରହଇ ହେଉଁ ସ୍ୱପନେ । କଂସ ଦେଖିଲା ତା ବେଳ ନୟନେ ॥
(୧.୧୦୦-୧୦୫)

ଦ୍ୱାଦଶ ଛାନ୍ଦରେ କଂସ, କୃଷ୍ଣ ଓ ବଳରାମଙ୍କୁ ମାରିବା ବିଷୟରେ ଅସୁରମାନଙ୍କ ସହିତ ପରାମର୍ଶ କରୁଛନ୍ତି । ସେ ପରାମର୍ଶ ହେଉଛି "ମନ୍ତ୍ରୀ (ଅକ୍ରୂର) ମେଳଣି ଅନ୍ତେ", ଅର୍ଥାତ୍ ଏକ ଶ୍ରେୟସ୍କର ମନୋବୃତ୍ତି ଅନ୍ତର୍ହିତ ହେବା ପରେ । ସେତେବେଳେ କଂସ ସ୍ୱୀକାର କରୁଛନ୍ତି ଯେ ସେ ଭୀତ ("ଏଣୁ ମୁଁ ଭୟ କରଇ ମନେ"), କିନ୍ତୁ ଯେହେତୁ ସେ ଏକ ଉଚ୍ଚତର ଜୀବନବୋଧକୁ ପ୍ରତ୍ୟାଖ୍ୟାନ କରି ସାରିଛନ୍ତି, ତାର ବ୍ୟର୍ଥ ଅଦୃଷ୍ଟ ସହିତ ସହଯୋଗ କରିବାକୁ ସେ ବାଧ୍ୟ । କୃଷ୍ଣ ଓ ବଳରାମଙ୍କୁ ମାରିବା ଯୋଜନା ସେ ସହଯୋଗର ପ୍ରକାଶ୍ୟ ରୂପ, ଏବଂ 'ଅକ୍ରୂରଙ୍କ ମେଳଣି ଅନ୍ତେ' ତାହା ଘଟିବା ସ୍ୱାଭାବିକ । ଅଷ୍ଟାଦଶ ଛାନ୍ଦରେ କଂସ ନିଜର ନିଃସଙ୍ଗତା ତୀବ୍ର ଭାବେ ଅନୁଭବ କରୁଛନ୍ତି ଏବଂ ହୃଦୟଙ୍ଗମ କରିଛନ୍ତି ଯେ ସାହଚର୍ଯ୍ୟ-ଶୂନ୍ୟତା ହିଁ ତାର ଭାଗ୍ୟ—

ବୋଲଇ କଂସ ହୋଇଲି ନଷ୍ଟେ ନାଶ
କାହିଁକି ଧରାଇ ଆଣିଲି ।
ଇଚ୍ଛା ସୁଖେ ନିଜ ଅଙ୍ଗ ହାଣିଲି ।
ଯେଉଁମାନେ ବଳ ଦେଇ କହୁଥିଲେ
ସେମାନଙ୍କୁ ମୁଁ ଏବେ ଜାଣିଲି···(୧୮.୪)

ଏହା ବୁଝିବା ପରେ କଂସ ନିଜଭିତର ଆହୁରି ଗୂଢ଼ତର, ଆହୁରି ଅନ୍ଧାରତର ପ୍ରଦେଶକୁ ଚାଲିଯାଉଛନ୍ତି, ସତେ ଯେପରି ସେ ଏକ ଆତ୍ମନକୋଚୀ ଉଜ୍ଜ୍ୱଳ ବାସ୍ତବତା ଠାରୁ ଆତ୍ମଗୋପନ କରି ନିଜର କ୍ଷୁଦ୍ର ଅଥଚ ପରିଚିତ ସତ୍ତାକୁ ସୁରକ୍ଷିତ ରଖିବାକୁ ଚେଷ୍ଟା କରୁଛନ୍ତି । ତା ଦୃଷ୍ଟିରେ ପ୍ରତ୍ୟେକ ସମ୍ପର୍କ ଏକ ଆକ୍ରମଣ, ସାହଚର୍ଯ୍ୟର ତାତ୍ପର୍ଯ୍ୟ ହେଉଛି ଆତ୍ମସତ୍ତାର ବିଲୟ । ଆସନ୍ନ ବ୍ୟର୍ଥତାର ବିଶାଳତା କଂସ ପାଖରେ ସ୍ପଷ୍ଟ, ଏବଂ ସେ ନିର୍ଦ୍ଦିଷ୍ଟ ଭାବେ ଜାଣିଛନ୍ତି ଯେ ତାର ମନୋବୃତ୍ତି (କଂସର ଅନୁଚରମାନେ ସେ ମନୋବୃତ୍ତିର ପ୍ରତୀକ ମାତ୍ର) ନିସ୍ତାରର ପନ୍ଥା ନୁହେଁ, କିନ୍ତୁ ସେ ଆଜି ନିଜ ଜୀବନର ଗତିଧାରା ବଦଳାଇ ପାରିବ

ନାହିଁ, ଆଉ କୌଣସି ଅର୍ଥପୂର୍ଣ୍ଣ ସମ୍ପର୍କ ସ୍ଥାପନ କରିପାରିବ ନାହିଁ । ଭକ୍ତଚରଣଙ୍କ କଥାବସ୍ତୁ ଆଗରୁ ନିର୍ଦ୍ଦିଷ୍ଟ ଏବଂ ସେଥିରେ ବ୍ୟତିକ୍ରମ କରି ଏକ ଆଶାଜନକ ସମ୍ଭାବନା ଉପସ୍ଥାପିତ କରିବା କଳ୍ପନାତୀତ; ଏକ ସମ୍ଭାବନାଶୂନ୍ୟ, ଶୁଷ୍କ, ନିର୍ଜ୍ଜୀବ ଭବିଷ୍ୟତର ମାର୍ମିକ ଅନୁଭୂତି କପରି ତାଙ୍କ କବିତାରେ ପ୍ରକଟିତ ହୋଇଛି ଆମେ କେବଳ ତାହାହିଁ ଦେଖିବା । ଯେଉଁ ମନ ପକ୍ଷରେ ନିଜେହିଁ ସର୍ବଶ୍ରେଷ୍ଠ ବାସ୍ତବତା, ସେ ମନର ଶିଦ୍ଧମସ୍ତ ଅଭିବ୍ୟକ୍ତି ଏବଂ କୌଣସିମତେ ଆଗତ ପ୍ରାପ୍ତ ବିପର୍ଯ୍ୟସ୍ତକୁ ଏଡ଼ିଦେଇ ପାରିବାର କାତର ଦୁରାଶା ପ୍ରକଟିତ କରିବାପାଇଁ କବିତା ବ୍ୟବହୃତ ହୋଇଛି । ଯେଉଁ କୌଶଳ ତାର ନିଃସଙ୍ଗତାର କାରଣ ସେ କୌଶଳ ଛାଡ଼ିବାର ସ୍ପୃହା ନାହିଁ; ସେ କୌଶଳ ହେଉଛି ସଂଘର୍ଷ ଜରିଆରେ ଅନ୍ୟମାନଙ୍କୁ ପରାଭୂତ କରିବା, ନିଷ୍କ୍ରିୟ କରିବା, ଲୁଣ୍ଠନ କରିବା ଏବଂ ତଦ୍ଦ୍ୱାରା ନିଜର ସତ୍ତାକୁ ବଳବତ୍ତର କରିବା, ଆହୁରି ବ୍ୟାପ୍ତ କରିବା ✳। ନିଜକୁ ଅନ୍ୟ ସହିତ ସମ୍ପର୍କିତ କରି, ଆତ୍ମସତ୍ତାକୁ ସମ୍ପର୍କର ଆତ୍ମିକ ଅନୁଭୂତିରେ ନିଶ୍ଚିହ୍ନ କରି ଦୈହିକ ମୃତ୍ୟୁର ଭୟାବହତାକୁ ତାତ୍ପର୍ଯ୍ୟଶୂନ୍ୟ କରିବାର କୌଶଳଠାରୁ ଏ କୌଶଳ ପୃଥକ୍ ଏବଂ ଏହା ସୃଷ୍ଟିକଲାବେଳେ ଭକ୍ତଚରଣ ସଂଘର୍ଷସୂଚକ, ଏକ ଦ୍ୱାରା ଅନ୍ୟର ବିନାଶସୂଚକ ଶବ୍ଦକଳ୍ପ ବ୍ୟବହାର କରିଛନ୍ତି—

ଗଙ୍ଗଶିଉଳୀ କୁସୁମକୁ ଦ୍ୱାଦଶ
ମାରତଣ୍ଡ ଉଦେ କରୁଛ ।
ଭଗ୍ନକୂଳକୁ ବତାସ ଲେଉ଼ଛ ।
କୀଟକୁ କୁଳିଶ, ଶିରୀଷ କୁସୁମେ
ମହାବରଷା ପ୍ରାପ୍ତ କରୁଛ···(୧୮·୧୧)

---

✳ କାଲି ଆପଣେ ବାରପଣ କହିବ
ଶୁଭେ ପାଉ ଆଜ ଶବଶ ।
ରାମକୃଷ୍ଣଙ୍କୁ ପକାଇବ ମାରି ।
ଯେଉଁହନ ସୁର ନରଙ୍କୁ ଜିଣିଲ
କେହୁ ନ ଥିଲେ ସଙ୍ଗେ ମୋହରି···(୧୮·୮)

ଊନବିଂଶ ଗୁନ୍ଦରେ କଂସ, କୃଷ୍ଣ ଓ ବଳରାମଙ୍କୁ ତଥା ନନ୍ଦ, ଯଶୋଦା, ବସୁଦେବ ଓ ଦେବକୀଙ୍କୁ ମାରିବା ସିଦ୍ଧାନ୍ତ କରିଛି । ଏହା ଅଷ୍ଟାଦଶ ଗୁନ୍ଦରେ ବର୍ଣ୍ଣିତ ଦ୍ୱୈତଭାବର ସ୍ୱାଭାବିକ ବିକାଶ । ଦ୍ୱାବିଂଶ ଗୁନ୍ଦରେ କଂସ ଶେଷଥର ପାଇଁ ଦେଖାଦିଏ । ଯେତେବେଳକୁ କୃଷ୍ଣ ବଳରାମ ହାତୀ ଓ ମଲ୍ଲମାନଙ୍କୁ ନିପାତ କରି, ସବୁ ଅନ୍ତରାୟ ଅତିକ୍ରମ କରି ସାମ୍ନାରେ ଠିଆ ହେଲେଣି । ସ୍ଥୂଳ ଓ କାୟିକ ଶକ୍ତିଦ୍ୱାରା ଏକ ଅସଫଳ ଓ ଅସୁନ୍ଦର ଜୀବନମାର୍ଗକୁ ରକ୍ଷା କରାଯାଇ ପାରିବ ନାହିଁ ଏବଂ ତାର ଗୌରବହୀନ ସମାପ୍ତି ଅବଶ୍ୟମ୍ଭାବୀ, ସମ୍ଭବତଃ ଏହାହିଁ ସୁଚିନ୍ତିତ ପ୍ରତିବନ୍ଧକମାନଙ୍କର ବିପର୍ଯ୍ୟୟ ଦ୍ୱାରା ସୂଚିତ । କଂସର ମୃତ୍ୟୁର କୌଣସି ଆଡ଼ମ୍ବର ବା ଅସାଧାରଣତା ନାହିଁ । ତାର ଉଗ୍ର, ଆସ୍ଫାଳନମୟ ଅହଂସର୍ବସ୍ୱ ଜୀବନର ଗୃହକର୍ତ୍ତବ୍ୟ ତୁଳନାରେ ତାର ମୃତ୍ୟୁ ଅତ୍ୟନ୍ତ ବିବର୍ଣ୍ଣ, ଅତ୍ୟନ୍ତ ମାମୁଲି । ଏହି ବିବର୍ଣ୍ଣତାହିଁ ସେ ଜୀବନର ଅସଲ ରଙ୍ଗ, ସେ ଜୀବନ ପ୍ରକୃତପକ୍ଷେ ନିହାତି ମାମୁଲି । ସେ ମୃତ୍ୟୁର ବର୍ଣ୍ଣନା ପାଇଁ ଭକ୍ତଚରଣ ଦୁଇଟି ଧାଡ଼ିରୁ ବେଶି ଦେଇନାହାନ୍ତି । ※

ଏପରି ଏକ ଅସମ୍ପର୍କିତ ଓ ବ୍ୟର୍ଥ ଜୀବନ ଅପେକ୍ଷା ପ୍ରେମମୟ, ଭାବର ଆଦାନପ୍ରଦାନ ଦ୍ୱାରା ସମୃଦ୍ଧ ଜୀବନର ଉତ୍କର୍ଷ କାବ୍ୟରେ ବଳିଷ୍ଠ ଭାବେ ପ୍ରତିପାଦିତ । ଯଶୋଦା ଓ ଗୋପୀମାନେ ଏହି ଶ୍ରେୟସ୍କର ଜୀବନୀଶକ୍ତିର ପ୍ରାଚୁର୍ଯ୍ୟରେ ଉଦ୍‌ବେଳିତ । ଯେଉଁ ଜୀବନଚର୍ଯ୍ୟାରେ ଅହଂସତ୍ତ୍ୱ ଅକ୍ଷୁଣ୍ଣ ରହେ ତାହା ସେମାନେ ଅସ୍ୱୀକାର କରି ସରଳ, ଘନିଷ୍ଠ ଅନ୍ତରଙ୍ଗତାର ନିଃସନ୍ଦେହ ମହତ୍ତ୍ୱ ସାବ୍ୟସ୍ତ କରିଛନ୍ତି । ବ୍ୟକ୍ତିର ବ୍ୟକ୍ତି ସହିତ ସନ୍ତୋଷଜନକ ସମ୍ପର୍କ ଯେତେ ବେଶି, ଜୀବନ ସେତେ ବେଶି ପରିପୂର୍ଣ୍ଣ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ସନ୍ତୋଷଜନକ ସମ୍ପର୍କ କଣ ? ଯେଉଁ ସମ୍ପର୍କରେ ଅନୁଭବକାରୀ ଚେତନା ଅନୁଭୂତି ସହିତ ସାମିଲ ହୋଇଯାଏ, ଯେଉଁ ସମ୍ପର୍କରେ ଯାହା ଅନୁଭୂତ ତାହା ଅନୁଭବକାରୀଠାରୁ ଅଭିନ୍ନ, ତାହାହିଁ ସନ୍ତୋଷଜନକ ।

---

※ ଧାଇଁ ପୀତବାସ ବାମକରରେ କେଶ ଧରିଲେ ହୋଇ କୋପମୂର୍ତ୍ତି ।
ଦଳିତ ଦଳିତାର ମୁଖ ଅନାଇ ଜୀବନ ଗୁଡ଼ିଲା ତଡ଼ିତ ॥ (୨୨·୧୭)

ଏ ମନୋବୃତ୍ତି କଂସର ମନୋବୃତ୍ତିର ଠିକ୍ ଓଲଟା । ଏଥିରେ ଆତ୍ମସତ୍ତାକୁ ବଳବତ୍ତର କରିବାର ସମସ୍ତ ପ୍ରଣାଳୀ ପ୍ରତ୍ୟାଖ୍ୟାତ— ଯେହେତୁ ସେ ସବୁ ପ୍ରଣାଳୀର ପରିଣାମ ହେଉଛି ନିଃସଙ୍ଗତା, ବ୍ୟର୍ଥତା । ଯେଉଁ ପ୍ରଣାଳୀରେ ଅନୁଭବକାରୀ ଓ ଅନୁଭୂତ ନିଜ ନିଜର ସତ୍ତା ହରାଇ ଏକୀଭୂତ ହୋଇଯାଇଛନ୍ତି ତାହାହିଁ ଗ୍ରାହ୍ୟ । ଯଦି ଅନୁଭୂତିର ଲକ୍ଷ୍ୟ ଏକ ବୃହତ୍ତର କାଳାତୀତ ସତ୍ୟ ହୁଏ, ତା ସହିତ ସମ୍ମିଶ୍ରଣ ଦ୍ୱାରା ମୃତ୍ୟୁଜନିତ ବ୍ୟର୍ଥତା ଏଡ଼ାଇ ଦେଇ ହେବ । ଯଦି ଆତ୍ମସତ୍ତା ଆଗରୁ ନିଶ୍ଚିହ୍ନ ହୋଇସାରିଛି, ମୃତ୍ୟୁଦ୍ୱାରା ଦେହର ବିଲୟ ଛଡ଼ା ଆଉ କିଛି ଘଟିବ ନାହିଁ । କଂସ ମନୋବୃତ୍ତିରେ ମୃତ୍ୟୁ ବିଧ୍ୱଂସିକାମୟ, ତାହା ବ୍ୟକ୍ତିସତ୍ତାକୁ ସମୂଳେ ସଂହାର କରେ; ସମ୍ପର୍କରେ ସମୃଦ୍ଧ ଜୀବନରେ ମୃତ୍ୟୁ ଅବାନ୍ତର—ଯେହେତୁ ବ୍ୟକ୍ତିସତ୍ତା ଏକ କାଳାତୀତ ବାସ୍ତବତାର ଅଂଶ ହୋଇସାରିଥାଏ ।

ଯଶୋଦା ଓ ଗୋପୀମାନଙ୍କଠାରେ କୃଷ୍ଣଙ୍କୁ ପାଇବା ପାଇଁ ଯେଉଁ ବ୍ୟାକୁଳତା ଦେଖାଯାଏ, ତାହା ଏକ ଗଭୀର ଅନୁଭୂତିର ଆନନ୍ଦରେ ନିଜକୁ ଉତ୍ସର୍ଗ କରିବା ପାଇଁ ମୃତ୍ୟୁ, ବିନାଶ ଓ ବ୍ୟର୍ଥତା ବାହାରେ ଥିବା ଏକ ଚିରନ୍ତନ ବାସ୍ତବତାରେ ସାମିଲ୍ ହୋଇଯିବା ପାଇଁ ବ୍ୟାକୁଳତା । କିନ୍ତୁ ଯଦି ଆତ୍ମସତ୍ତା ସମ୍ପୂର୍ଣ୍ଣଭାବେ ପରିତ୍ୟକ୍ତ ହୋଇ ନ ଥାଏ, ଯଦି ସେହି ସତ୍ତା ମାଧ୍ୟମରେ ସତ୍ୟର ଉପଲବ୍ଧି ଅଭିପ୍ରେତ ହୋଇଥାଏ, ତେବେ ସେ ବ୍ୟାକୁଳତା ନିର୍ମଳ ନୁହେଁ ଏବଂ ତାହା ମୃତ୍ୟୁ ବିରୁଦ୍ଧରେ ସମୁଚିତ ପ୍ରତିରକ୍ଷା ନୁହେଁ ।

ଯେତେବେଳେ ଉଦ୍ଧବ ଯଶୋଦାଙ୍କୁ କୃଷ୍ଣଙ୍କ ନିର୍ଗୁଣ, ପାରସ୍ପରିକ ସମ୍ପର୍କର ଊର୍ଦ୍ଧ୍ୱରେ ଥିବା ମହତ୍ତ୍ୱ ବୁଝି ବ୍ୟାକୁଳତାରୁ ନିବୃତ୍ତ ହେବାକୁ ପରାମର୍ଶ ଦେଲେ (ପଞ୍ଚବିଂଶ ଛାନ୍ଦ ଦ୍ରଷ୍ଟବ୍ୟ), ଯଶୋଦା ବୁଦ୍ଧି ଓ ଜ୍ଞାନ ମାଧ୍ୟମରେ ଜୀବନକୁ ଅର୍ଥପୂର୍ଣ୍ଣ ଓ ଉନ୍ନତତର କରିବା ପ୍ରଣାଳୀକୁ ନାକଚ କରି ଦେଇଛନ୍ତି ଯେହେତୁ ଏ ପ୍ରଣାଳୀରେ ବ୍ୟକ୍ତିର ନିଜସ୍ୱ ସତ୍ତା ଅକ୍ଷୁର୍ଣ୍ଣ ରହିଥାଏ । ଏ ପ୍ରଣାଳୀରେ ସମ୍ମିଶ୍ରଣ ସମ୍ପୂର୍ଣ୍ଣ ହୁଏ ନାହିଁ ଯେହେତୁ ନିଜର ସତ୍ତା ଥିବା ଯାଏଁ ନିଜର ସ୍ୱାର୍ଥ ମଧ୍ୟ ଥାଏ ।* ବ୍ରହ୍ମ-ଆରାଧନା

* ତଥାପି ଯୋଗୀ ବ୍ରହ୍ମଧ୍ୟାନ କରନ୍ତି ମୁକ୍ତିର ନିମିତ୍ତ । (୨୫-୩୩)

ସ୍ୱାର୍ଥରହିତ ନ ହେଲେ କଂସ-ମନୋବୃତ୍ତିର ଏକ ମାର୍ଜିତ ସଂସ୍କରଣ ମାତ୍ର । ଯେଉଁ ସମ୍ପର୍କ ସମ୍ବେଦନଶୀଳ ନୁହେଁ ତାହା ନ୍ୟୂନ, ତାହା ଜୀବନର ଅବାନ୍ତରତା ଓ ବ୍ୟର୍ଥତାର ନବୀକରଣ ପାଇଁ ଅସମର୍ଥ । ଉଦ୍ଧବଙ୍କୁ ତିରସ୍କାର କରି ଯଶୋଦା କହୁଛନ୍ତି—

ବ୍ରହ୍ମ ବ୍ରହ୍ମ ବୋଲି କେତେ ବୋଲ ତାକୁ ସେ ମୋର କୁମର ।

× × ×

ଯେବେ ସେ କଥା କହିବାକୁ ଝିଅର ଗୋପରେ ନ ଥାଅ ।
ଯହିଁ ଥିବେ ବ୍ରହ୍ମଜ୍ଞାନ ଥିଲା ଲୋକେ ତାହାଙ୍କୁ ବୁଝାଅ ॥

× × ×

ଯହିଁକି ଆସିଛ ସେ କଥା ନ କହି କହୁଛ ଏମାନ ।
କେ ଜାଣଇ ଜ୍ଞାନ କେ ଜାଣଇ ବ୍ରହ୍ମ କେ ଜାଣେ ଭଜନ ।
ଯେଉଁ ଜ୍ଞାନ ଯେଉଁ ଭଜନ ସାଧନ କରୁଛି କହଇ ।
ଏକା ଶ୍ୟାମଘନ-ବରନ ମୋ ଧନ ଏତିକ ଜାଣଇ ।

× × ×

……ନନ୍ଦରାଣୀ କ୍ରୋଧକରି ବୋଲନ୍ତି ବଚନ ।
ମଥୁରାବାସୀ ଯେତେକ ତୁମେ ନାନା ବଚନ ବଖାଣ ॥

(୨୫, ୩୨, ୩୪, ୩୬, ୩୭, ୬୦)

ଗୋପୀମାନେ ମଧ୍ୟ ଆତ୍ମକୈନ୍ଦ୍ରିକ ସମ୍ପର୍କରେ ଅସାରତା ପ୍ରମାଣ କରିଛନ୍ତି ଏବଂ ଯେଉଁ ସମ୍ପର୍କରେ ଗ୍ରହଣ ନ ଥାଇ କେବଳ ଉତ୍ସର୍ଗ ଥାଏ ତାହାହିଁ ଜୀବନକୁ ଉତ୍ତୀର୍ଣ୍ଣ କରେ ବୋଲି ଦର୍ଶାଇଛନ୍ତି । ଉଦ୍ଧବ ଭଗବାନଙ୍କର ସାର୍ବଭୌମତ୍ୱ, ଅସମ୍ପର୍କିତ ଆତ୍ମସମ୍ପୂର୍ଣ୍ଣତା ଓ ଜଡ଼ତାର ସତ୍ତା ବ୍ୟାଖ୍ୟା କରି କହିଛନ୍ତି ଯେ ସେ ଧ୍ୟାନ (ଅର୍ଥାତ୍ ବ୍ୟକ୍ତିର ବୁଦ୍ଧିପ୍ରାପ୍ତ ଚେତନା) ଦ୍ୱାରା ପ୍ରାପ୍ତ ହୁଅନ୍ତି । ସେ ମାର୍ଗକୁ ପ୍ରତ୍ୟାଖ୍ୟାନ କରି

× × × ବୋଲନ୍ତି ଗୋପରମଣୀ

ଏ ଯେଉଁ ଜ୍ଞାନକୁ ବୁଝାଇଲ

କ୍ଷୀରଭାଣ୍ଡେ ଦଧିଦେଲେ ନାଶଯାଇ ସେହୁ ଭଲେ

ଜ୍ଞାନକଥା କମ୍ପାଇ କହିଲ, ହେ ହରିଦୂତ ।

ଆମ୍ଭର ଭଗତି ଗଙ୍ଗାଧର ଜ୍ଞାନ ନଦୀ ତହିଁ ସମକର ହେ ।

× × ×

ଦେଖିଲେ ଦିଶେ ସୁନ୍ଦର                    ନ ଥାଇ କିଛି ଉଦର
ସେହିରୂପେ ରସହୀନ ଜ୍ଞାନ ।

× × ×

ବ୍ରହ୍ମ ବୋଲି ଯାହା କହ                    ପ୍ରକୃତି ତାହାର ଦେହ
କୁଳଣ ପରାପ୍ୟେ ରହସ୍ୟନ । (୨୬·୫, ୭, ୧୦)

ଅର୍ଥପୂର୍ଣ୍ଣ ସମ୍ପର୍କ ଉତ୍ସର୍ଗ ଓ ଅର୍ପଣ ଦ୍ୱାରା ସମ୍ଭବ, ହୃସାଖୀ ବୁଦ୍ଧି ଦ୍ୱାରା ନୁହେଁ । ଯେଉଁ ସତ୍ୟ ଆବେଗଶୂନ୍ୟ, ଯେଉଁ ବ୍ୟକ୍ତିତ୍ୱ ସମ୍ବେଦନଶୀଳ ନୁହେଁ, ତାହା ଜୀବନକୁ ଅର୍ଥମୟ କରିପାରିବ ନାହିଁ, ସେ ସତ୍ୟ ଓ ସେ ବ୍ୟକ୍ତିତ୍ୱ ସ୍ୱୟଂ ଭଗବାନ ପଛକେ ହୁଅନ୍ତୁ "(ଦମ୍ଭ, ଲଜ୍ଜା, ଜାତି, ଦାରା, ଧନ···ଏମାନ ତେଜିଲେ ପାଇ ପ୍ରେମ, ବ୍ରହ୍ମଜ୍ଞାନେ ବଅର୍ଥେ ନ ଭ୍ରମ···" ୨୬·୧୧) । ନିର୍ଗୁଣ ବ୍ରହ୍ମଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଚେଷ୍ଟିତ ଉଦ୍ଧବ ଯେତେବେଳେ ସମ୍ବେଦନଶୀଳ ସମ୍ପର୍କର ସପକ୍ଷରେ ଯୁକ୍ତିର ମୁକାବିଲା କରିପାରି ନାହାନ୍ତି ସେ ଏ ଦ୍ୱନ୍ଦ୍ୱରୁ ତୁନ୍ନୁପ ଓହରିଯିବା ଉଦ୍ଦେଶ୍ୟରେ କହୁଛନ୍ତି ଯେ ସେ କେବଳ କୃଷ୍ଣଙ୍କ ଆଦେଶରେ ଗୋପୀମାନଙ୍କୁ "ପ୍ରବୋଧ ଦିବାପାଇଁ" ଆସିଥିଲେ । ଗୋପୀମାନେ ତାଙ୍କୁ ସେ ଅବସର ଦେଇ ନାହାନ୍ତି ଓ ତାଙ୍କ ମାର୍ଗର ଫମ୍ପାର୍ଣ୍ଣତା, ଅନ୍ତଃସାରଶୂନ୍ୟତା ଦର୍ଶାଇଛନ୍ତି—

ଶୁଣି ହସିଲେ ଗୋପିକା                    ଏବେ ସେ ପାରିଲୁଁ ଜାଣି
ଆମ୍ଭ ବ୍ରହ୍ମ ସବୁର ଗୋସାଇଁ ହେ, ହରିଦୂତ ।
ତୁମ୍ଭ ବ୍ରହ୍ମ କୃଷ୍ଣ ବୋଲୁଛନ୍ତି        ଆଜ୍ଞାପାଇ ସମସ୍ତ କରନ୍ତି ହେ ।
(୨୬·୧୮)

ଉଦ୍ଧବଙ୍କ ପରାଜୟ ଏହାପରେ ସମ୍ପୂର୍ଣ୍ଣ ହୋଇଛି ଏବଂ ସେ ନିଜେ ଏହା ସ୍ୱୀକାର କରିଛନ୍ତି (୨୬·୧୯ ଦ୍ରଷ୍ଟବ୍ୟ) । ସେ ବ୍ୟକ୍ତିସତ୍ତାର ଉତ୍ସର୍ଗରେ ସମୃଦ୍ଧ ସମ୍ପର୍କରେ ଶ୍ରେଷ୍ଠତ୍ୱ ହୃଦୟଙ୍ଗମ କରି ସେହି ମାର୍ଗ ଗ୍ରହଣ କରିବାକୁ ସ୍ଥିର କରିଛନ୍ତି—

ଏବେ ଏହି କୃପା କର                    ଆଜ୍ଞା ଦିଅ ଶିଖୀଧର
ଫେରିଯିବି ସେହି ବୃନ୍ଦାବନ, ହେ ଦୀନବନ୍ଧୁ ।
ଗୋପୀଙ୍କ ସଙ୍ଗରେ ବଞ୍ଚୁଥିବି,        ଏଥେ ଥାଇ କି ସୁଖ ଭୁଞ୍ଜିବି ସେ ॥
(୩୦·୫)

'ମଥୁରାମଙ୍ଗଳ' ଏପରି ଦୁଇଟି ବିପରୀତଧର୍ମୀ ଜୀବନଚର୍ଯ୍ୟାର ମୂଲ୍ୟାଙ୍କନ । ଗୋଟିକରେ ଆକ୍ରମଣ, ଲୁଣ୍ଠନ ଓ ଅନ୍ୟମାନଙ୍କ ବଶତା ଜରିଆରେ ବ୍ୟକ୍ତି ନିଜକୁ ପ୍ରତିଷ୍ଠିତ କରିବାକୁ ଚାହେଁ; ଅନ୍ୟଟିର ଲକ୍ଷ୍ୟ ହେଉଛି ଏକ ଅନାବିଳ, ସ୍ୱାର୍ଥରହିତ ସମ୍ପର୍କ—ଯେଉଁଥିରେ ଜଣେ ଅନ୍ୟ ଜଣଙ୍କର ଜୀବନରେ ପ୍ରବେଶ କରିପାରେ ଏବଂ ସେପରି ପ୍ରବେଶ କରିବା-ଦ୍ୱାରା ବ୍ୟର୍ଥତାର ଉର୍ଦ୍ଧ୍ୱକୁ ଉଠି ପାରେ । ବସ୍ତୁତଃ ଏହି ଦୁଇଟି ପ୍ରଣାଳୀ ଭିତରେ ତାରତମ୍ୟ ଏବଂ ପ୍ରଥମ ପ୍ରଣାଳୀର ନିଷ୍ଫଳତା ଅନେକ ଆଧୁନିକ ସାହିତ୍ୟ-କୃତିର ମୂଳ ପ୍ରେରଣା । ଏହି ପ୍ରେରଣା ପାଶ୍ଚାତ୍ୟ ସାହିତ୍ୟରେ ଆଧୁନିକ ଯୁଗର ଏକ ବିଶିଷ୍ଟ ଗୁଣ; ଶୁଷ୍କ ବନ୍ଧ୍ୟ ଜୀବନର ନିଃସଙ୍ଗତା ଓ ବ୍ୟର୍ଥତା ଏବଂ ଏକ ଘନିଷ୍ଠ ସମ୍ପର୍କଦ୍ୱାରା ଜୀବନର ସାର୍ଥକତା ଏହି ଶତାବ୍ଦୀର ପୂର୍ବବର୍ତ୍ତୀ ସାହିତ୍ୟ ଓ ସାହିତ୍ୟାଦର୍ଶରେ ଏତେ ବେଶୀ ପ୍ରତିଫଳିତ ଯେ ଏ ପ୍ରେରଣାକୁ ବାଦ୍ ଦେଇ ସେ ସାହିତ୍ୟର ତର୍ଜମା କରିବା ଅସମ୍ଭବ । ଏହାର ଅନେକ ଦୃଷ୍ଟାନ୍ତ ଦେଇ ହେବ, ଅନେକ କବି, ଔପନ୍ୟାସିକ ଓ ନାଟ୍ୟକାରଙ୍କ କୃତି ଯେ ଏହି ଦ୍ୱିବିଧ ଜୀବନଚର୍ଯ୍ୟାର ଦ୍ୱନ୍ଦ୍ୱ ଉପରେ ଆଧାରିତ, ତାହା ଦେଖାଇ ଦିଆଯାଇ ପାରିବ । ସେପରି କରି ଏ ପୁସ୍ତକର କଳେବର ବଢ଼ାଇବା ମୋର ଉଦ୍ଦେଶ୍ୟ ନୁହେଁ; ମୋର ଉଦ୍ଦେଶ୍ୟ କେବଳ ଏତିକି କହିବା ଯେ ସାହିତ୍ୟକୁ ତାର ଆବେଦନ ଦୃଷ୍ଟିରୁ ବିଚାର କରିବା ଉଚିତ, ରଚନାକାଳ ବା କୌଣସି ନିର୍ଦ୍ଦିଷ୍ଟ ସମୟରେ ପ୍ରଚଳିତ କୌଣସି ତତ୍ତ୍ୱର ପରିପ୍ରେକ୍ଷୀରେ ବିଚାର କରିବା ଉଚିତ ନୁହେଁ । ଏପରି ପ୍ରକୃତ ଅର୍ଥରେ 'ମଥୁରାମଙ୍ଗଳ' ଆଧୁନିକ । ଆମେ ଏହାକୁ ଅଷ୍ଟାଦଶ ଶତାବ୍ଦୀର ସାହିତ୍ୟ ଭାବେ ବା ବୈଷ୍ଣବ ତତ୍ତ୍ୱର ନିଦର୍ଶନ ଭାବେ ବିଚାର କରିବା ଯାହା, ରେଲୱାଇର ସମସ୍ତ ନିର୍ଘଣ୍ଟ ଅନୁଯାୟୀ ରେଳଗାଡ଼ି ପ୍ରତ୍ୟେକ ଷ୍ଟେସନ୍‌ରେ ପହଞ୍ଚୁଛି କି ନାହିଁ ଜାଣିବା ପାଇଁ ଚନ୍ଦ୍ରପକ୍ଷ ଗତିରେ ଦେଖାଯାଆ କହିବା ତାହା ।

୪

ଲେଖକ ଦୃଷ୍ଟିରେ ସାହିତ୍ୟ ଓ ସଭ୍ୟତା ଏକ ମୂଲ୍ୟବୋଧ ଉପରେ ଆଧାରିତ, ସୁତରାଂ ଉଭୟେ ବସ୍ତୁତଃ ଏକ ଉଦାହରଣ ସ୍ୱରୂପ,

'ମଧୁର ମଙ୍ଗଳ'ରେ ଦୁଇ ପ୍ରକାରର ଚରିତ୍ରଙ୍କ ମୂଲ୍ୟାଙ୍କନ କରଯାଇଛି; ଗୋଟିଏ ଶ୍ରେଣୀର ଚରିତ୍ର ପକ୍ଷରେ ଜୀବନର ସାର୍ଥକତା ପ୍ରବୃତ୍ତିମାନଙ୍କୁ ଚରିତାର୍ଥ କରି ପାରିବା କ୍ଷମତା ଦ୍ୱାରା ନିରୂପିତ ହୁଏ, ଅନ୍ୟ ଶ୍ରେଣୀର ଚରିତ୍ର ପକ୍ଷରେ ପ୍ରବୃତ୍ତିମାନଙ୍କ ପରିସର ବାହାରେ ବିଦ୍ୟମାନ ଏକ ଉଚ୍ଚତର ଜୀବନ ସହିତ ସମ୍ମିଶ୍ରଣ ସର୍ବଶ୍ରେଷ୍ଠ ଲକ୍ଷ୍ୟ । ଦ୍ୱିତୀୟ ପକ୍ଷ ପ୍ରତି କବିଙ୍କ ସମର୍ଥନ ବିଷୟରେ କୌଣସି ସନ୍ଦେହର ଅବକାଶ ନାହିଁ; ସେ ସମର୍ଥନ ସଭ୍ୟତା ପ୍ରତି ସମର୍ଥନ । ପ୍ରବୃତ୍ତିମାନଙ୍କ କଠୋର ବାଧ୍ୟବାଧକତାରୁ ଓ ଜଡ଼ ପରିପାର୍ଶ୍ୱର ନିୟନ୍ତ୍ରଣରୁ ମୁକ୍ତ ହୋଇ ଏକ ଦେଶାତୀତ, କାଳାତୀତ ସତ୍ୟର ବ୍ୟାକୁଳ ସନ୍ଧାନଦ୍ୱାରା ଉତ୍ତୀର୍ଣ୍ଣ ଜୀବନର ସାହଚର୍ଯ୍ୟ ମାଧ୍ୟମରେ ଉପଲବ୍ଧି ପ୍ରକୃତ ସାହିତ୍ୟିକର ଏକମାତ୍ର ପ୍ରଚେଷ୍ଟା । ଏ ପ୍ରଚେଷ୍ଟାରୂପ ଅନେକ ହୋଇପାରେ, ସେ ରୂପଗୁଡ଼ିକ ପରସ୍ପର ବିରୋଧୀ ମଧ୍ୟ ହୋଇ ପାରନ୍ତି, କିନ୍ତୁ ପ୍ରଚେଷ୍ଟାର ବିଭିନ୍ନତା ସତ୍ତ୍ୱେ ପ୍ରକୃତ ସାହିତ୍ୟିକ ଚିତ୍ତବୃତ୍ତି ଏହି ଗୋଟିଏ ଲକ୍ଷ୍ୟ ଦିଗରେ ହିଁ ଅଗ୍ରସର ହୁଏ । ସେ ଲକ୍ଷ୍ୟର ଆକର୍ଷଣ ଏତେ ଶକ୍ତିଶାଳୀ ଯେ ନାନାବିଧ ଅତ୍ୟାଚାର ଓ ଉତ୍ପୀଡ଼ନ ସତ୍ତ୍ୱେ ସାହିତ୍ୟିକ ସେଥିରୁ ନିବୃତ୍ତ ହୋଇପାରି ନାହିଁ ଏବଂ ନାନାବିଧ ପ୍ରଲୋଭନ ସତ୍ତ୍ୱେ ତା ଦୃଷ୍ଟିରେ ନିଜର ଚକ୍ଷୁର ଫାନ୍ଦରେ ପରସ୍ପରିତ କରିନାହିଁ । ସାଂସାରିକ ବାହାବା ଓ ସାଫଲ୍ୟ ଅପେକ୍ଷା ତାକୁ ଉଦ୍‌ବୁଦ୍ଧ କରୁଥିବା କଳ୍ପନା ବେଶି ଆକର୍ଷଣୀୟ ଏବଂ ଏ କଳ୍ପନାର ଗୁଣ ତା ଚିତ୍ତବୃତ୍ତି ସହିତ ଅବିଚ୍ଛେଦ୍ୟ ଭାବେ ସଂଶ୍ଲିଷ୍ଟ । ଯେତେବେଳେ ସାହିତ୍ୟିକ ଏ ଗୁଣ ଜାଗାରେ ନିଜର ବ୍ୟକ୍ତିତ୍ୱକୁ ରଖେ, ସେତେବେଳେ ସେ ଉଚ୍ଚତର ସାହଚର୍ଯ୍ୟର ତଥା ସଭ୍ୟତାର ପରମ୍ପରାରୁ ଓହରି ଆସେ । ଯେଉଁମାନେ ସାହିତ୍ୟିକ ପ୍ରତି ଅତ୍ୟାଚାର କରି ତାର କଳ୍ପନାକୁ ମୂଳପୋଛ କରିଦେବାର ଉଦ୍ୟମ କରନ୍ତି ସେମାନଙ୍କ ବିକୃତ ମନୋବୃତ୍ତି ସହିତ ଏପରି ସାହିତ୍ୟିକର ମନୋବୃତ୍ତି ତୁଳନୀୟ । ଉଭୟେ ଚେତନାର ଉତ୍କର୍ଷ ଅପେକ୍ଷା କାର୍ଯ୍ୟକଳାପର ବୃଦ୍ଧିମତ୍ତାକୁ ପ୍ରାଧାନ୍ୟ ଦିଅନ୍ତି ।

ଅନେକ ବରିଷ୍ଠ ସାହିତ୍ୟିକ ସେମାନଙ୍କ କୃତିରେ ନିଜର ନାମୋଲ୍ଲେଖ ମଧ୍ୟ କରି ନାହାନ୍ତି । ଆହୁରି ଅନେକେ ଏତେ ବିନମ୍ରତା

ସହିତ ନାମୋଲ୍ଲେଖ କରିଛନ୍ତି ଯେ ନିଜର ଅପାରଗତା ଭବ ସେମାନେ ସନ୍ତ୍ରସ୍ତ ହୋଇ ପଡ଼ିଥିଲେ ପରି ମନେ ହୁଏ । ସେକ୍ସପିୟରଙ୍କ ଲେଖାର ପ୍ରକୃତ ଲେଖକ କିଏ ସେ ବିଷୟରେ ସନ୍ଦେହ ଉପୁଜି ପାରୁଛି; କାଳିଦାସଙ୍କ ଜୀବନ ବିଷୟରେ ପ୍ରାପ୍ତ କିଛି ଜଣା ନାହିଁ; ହୋମରଙ୍କ ବିଷୟରେ ଆମେ ନିର୍ଦ୍ଦିଷ୍ଟ ଭାବେ କେବଳ ଏତିକି ଜାଣୁଁ ଯେ ସେ ଜନ୍ମାନ୍ଧ ଥିଲେ । ନିଜର ବ୍ୟକ୍ତିତ୍ୱକୁ ଜାଣିଶୁଣି ଲୋପ କରିଦେବା ଅନେକ ଚିରସ୍ମରଣୀୟ ସାହିତ୍ୟିକଙ୍କ ଅଭ୍ୟାସ ହୋଇ ପଡ଼ିଥିଲା ପରି ମନେହୁଏ; ସମ୍ଭବତଃ ସେମାନେ ଯାହା ଲେଖିଛନ୍ତି ତାହା ସହିତ ଏ ଅଭ୍ୟାସର କିଛି ସମ୍ବନ୍ଧ ଅଛି ।

ସାହିତ୍ୟିକ ଭାଷା ବ୍ୟବହାର କରେ, କିନ୍ତୁ ଯେଉଁମାନେ ଭାଷାକୁ ସାଫଲ୍ୟ ଅର୍ଜନ କରିବା ପାଇଁ ବା ନିଜର ଫାଇଦା ପାଇଁ ବ୍ୟବହାର କରନ୍ତି ସେମାନଙ୍କ ବ୍ୟବହାର-ପ୍ରଣାଳୀଠାରୁ ସାହିତ୍ୟିକର ବ୍ୟବହାର-ପ୍ରଣାଳୀ ଅଲଗା । ଯେଉଁ ସାହିତ୍ୟିକମାନେ ଭାଷାକୁ ସାଫଲ୍ୟାଭିମୁଖୀ ପ୍ରଣାଳୀରେ ବ୍ୟବହାର କରନ୍ତି, ସେମାନେ ସବୁକାଳେ ତୃତୀୟ ଶ୍ରେଣୀର ସାହିତ୍ୟିକ; ଯେଉଁମାନଙ୍କର ବ୍ୟବହାର-ପ୍ରଣାଳୀ ସାହିତ୍ୟୋଚିତ, ଅର୍ଥାତ୍ ଯେଉଁମାନେ ଭାଷାକୁ ଏକ ଉଚ୍ଚତର ମୂଲ୍ୟବୋଧର ପ୍ରକାଶପାଇଁ ବ୍ୟବହାର କରିଥାନ୍ତି, ସେମାନେ ସାହିତ୍ୟର ପରମ୍ପରାକୁ ପୁଷ୍ଟ କରନ୍ତି । ସ୍ୱୀକୃତି ଓ ଆଦର ଖୋଜିବାକୁ ଯିବା ମାତ୍ରେ ହିଁ ସାହିତ୍ୟିକ ଭାଷାକୁ ଅନ୍ୟ ଲୋକଙ୍କ ପ୍ରଣାଳୀରେ ବ୍ୟବହାର କରିବାକୁ ସମ୍ମତ ହେଉଛି, ସାହିତ୍ୟିକ ଓ ପାଠକଙ୍କ ଭିତରେ ଆଦର୍ଶ ସମ୍ପର୍କରେ ଯେତେ ବାଧା ଦିଆଯାଉ ନା କାହିଁକି, ଜଣେ ସାହିତ୍ୟିକ ପକ୍ଷରେ ଏହାହିଁ ସବୁଠୁଁ ବଡ଼ ଅପରାଧ ।

ରମାକାନ୍ତ ରଥ